# ଇତିହାସ ଶିକ୍ଷଣ

## ( The Teaching of History )

ଲେଖକ ଓ ପ୍ରକାଶକ—

ଶ୍ରୀ ଶିବପ୍ରସାଦ ଦାଶ, M. Ed.

ସମ୍ବଲପୁର

ମୁଦ୍ରାକର—

ଶ୍ରୀ ଅକ୍ଷୟକୁମାର ଦାଶ

ବିଶ୍ୱଭାରତୀ ପ୍ରେସ

ସମ୍ବଲପୁର

ପ୍ରଥମ ମୁଦ୍ରଣ—୧,୦୦୦

ମେ ୧୯୭୫

Price—Rs. 3.50 P.

# A Talk to Teachers

Our teachers and professors take as gospel truth what the Western Methodologists, Mr. Herbert, Egbert, Lambert and so on profess to have been the method. They are apt to forget that methodology is still in the melting pot and will ever be such. What was considered as correct methodology yesterday is absolete today, and what is considered as modern methodology today will be absolete tomorrow. We as Indians hardly take into consideration the fact that our teacher-sages under the sylvan shade also had their methodology and produced scholars like Valmiki, Vyas, Charak and Shankar. I am a production of the western school of methodologists. But, I have incorporated in this small book my experiences of lifelong practical teachership in high schools and have deviated from wetern methodology. Although I have not been able to produce anything of a novel feature, my book is not a reproduction of any former in print.

My suggestions throughout to teachers are that there is no Highway to methodology and every teacher has his own method, his aim being concentrated on how to enkindle in his pupil the innate virtues in him, his power to think, to reason, to argue, to judge, to decide and to seek the truth distinguishing between right and wrong, truth and not-truth. The teacher ought to follow not the preceding methodologists but his own strong common sense.

I expect teachers to differ from me, but my labour will be amply rewarded if they take into consideration what I say in this small treatise

*Sambalpur,*
*15-5-65*

**S. P. DAS.**



# ସୂଚୀପତ୍ର



(ବିଶେଷ ଦ୍ରଷ୍ଟବ୍ୟ—୧୩୧ ପୃଷ୍ଠାରେ ଅଧ୍ୟାୟର ନାମ ଧାଡିରେ 'ପାଠଦାନ' ପରିବର୍ତ୍ତିରେ 'ଉଦାଦାନ' ବୋଲି ମୁଦ୍ରଣ ତ୍ରୁଟି ରହିଅଛି )।

---




— ଏକ —

## ଇତିହାସ କଅଣ ?

ଆଦିମ ମାନବ ପଶୁପରି ଅବସ୍ଥାରେ ଥିଲା । ନିଆଁ ଦେଖି ନ ଥିଲା, କି ଜାଣି ନ ଥିଲା । ବନରେ ବାଉଁଶକୁ ବାଉଁଶ ଘଷି ହୋଇ ଯେତେବେଳେ ହଠାତ୍ ନିଆଁ ଜଳି ଉଠିଲା, ମନୁଷ୍ୟ ତାହା ଦେଖି ଚମକି ପଡ଼ିଲା । ସେ ନିଆଁକୁ ଲକ୍ଷ୍ୟ କଲା, ନିଆଁ ସମ୍ବନ୍ଧରେ ଭାବିଲା । ନିଆଁର ଉପଯୋଗିତା ବୁଝିଲା, ତାକୁ ନିଜ କାମରେ ଲଗାଇବାକୁ ଶିଖିଲା ।

ଅଗ୍ନି କିପରି ବାହାରେ, କୃତ୍ରିମ ଉପାୟରେ କିପରି ଅଗ୍ନି ବାହାର କରିବାକୁ ହେବ, କିପରି ତାକୁ ସଞ୍ଚି ରଖିବାକୁ ହେବ, ତହିଁରୁ କି କି ଉପକାର ମିଳିବ, ଇତ୍ୟାଦି ଅନେକ କଥା ଜାଣିବାକୁ ମାନବ ଖୋଜିଲା ଏବଂ ତହିଁର ଉପାୟ ବାହାର କଲା ।

ଅଗ୍ନି ସମ୍ବନ୍ଧୀୟ ଏହି ଜ୍ଞାନ ବା ଅଗ୍ନିର ଇତିହାସ ମାନବ ନିଜ ଉପକାର ସକାଶେ ସମ୍ପାଦ ରଖିଲା । ସେହି ଜ୍ଞାନ ବା ଇତିହାସକୁ ପୁରୁଷରୁ ପୁରୁଷକୁ ଉତ୍ତରାଧିକାର ସୂତ୍ରରେ ଦାନ କଲା । ଗୋଟିଏ ପୁରୁଷର ଲୋକେ ସେହି ଜ୍ଞାନର ବିଶ୍ଲେଷଣ ଓ ଆଲୋଚନା କରି ଅଗ୍ନି ସମ୍ବନ୍ଧରେ ନୂଆ ନୂଆ ତଥ୍ୟ ବାହାର କଲେ ଏବଂ ପରବର୍ତ୍ତୀ ପୁରୁଷକୁ ବା ମାନବ ସମାଜକୁ ସେହି ବର୍ଦ୍ଧିତ ଜ୍ଞାନ ହସ୍ତାନ୍ତର କଲେ ।

ମୌଖିକ ଆକାରରେ ହେଉ କିମ୍ବା ଲିଖିତ ଆକାରରେ ହେଉ, ଅଗ୍ନିର ଇତିହାସ ବା ଅଗ୍ନି ସମ୍ବନ୍ଧରେ ଆବିଷ୍କୃତ ସମସ୍ତ ତଥ୍ୟ ମାନବ ସମାଜର ସମ୍ପଦ ହୋଇ ରହିଲା । ତାହା ବରାବର ମାନବ ସମାଜର ଅଶେଷ କଲ୍ୟାଣ ସାଧନ କରି ଆସିଛି ।

ମାନବ ଯଦି ସେହି ଇତିହାସ ରଖି ନ ଥାନ୍ତା, କିମ୍ବା ପୁରୁଷାନୁକ୍ରମେ ପରବର୍ତ୍ତୀ ସମାଜକୁ ସେହି ଇତିହାସ ହସ୍ତାନ୍ତର କରି ନ ଥାନ୍ତା, ତାହାହେଲେ ସେ ଆଜି ପର୍ଯ୍ୟନ୍ତ ଅଗ୍ନି ସମ୍ବନ୍ଧରେ କିଛି ଜାଣି ନ ଥାନ୍ତା । କଞ୍ଚା ଫଳମୂଳ ଓ ମାଂସ ଖାଉଥାନ୍ତା । ଅନ୍ଧାରରେ ରାତି କଟାଉଥାନ୍ତା । ଅଳ୍ପ କଥାରେ, ମାନବ ଆଜି ପର୍ଯ୍ୟନ୍ତ ସେହି ପ୍ରାଚୀନ ଆଦିମ ଅର୍ଥାତ୍ ଅସଭ୍ୟ ଅବସ୍ଥାରେ ରହିଥାନ୍ତା ଏବଂ ଆମ୍ଭେମାନେ ବର୍ତ୍ତମାନର ମାନବ ସଭ୍ୟତା ପାଇ ନ ଥାନ୍ତୁ ।

କୌଣସି ପ୍ରାଣୀ, ବସ୍ତୁ, ଘଟନା, ଅଥବା ଆଧିଭୌତିକ, ଆଧ୍ୟାତ୍ମିକ ବା ଆଧିଦୈବିକ ଜଗତ ସମ୍ବନ୍ଧରେ ମାନବ ଯେଉଁ ଜ୍ଞାନ ବା ତଥ୍ୟ ଉପାର୍ଜନ କରେ, ତାହାର ବିବରଣୀ ହିଁ ଇତିହାସ,

ଯାହା ମାନବ ମୌଖିକ ବା ଲିଖିତ ଆକାରରେ ସମ୍ବାଦ ରଖେ । ସେହି ସମ୍ବାଦିତ ତଥ୍ୟ ବା ଜ୍ଞାନ ପରବର୍ତ୍ତୀ ପୁରୁଷର ବା ସମାଜର ଉପକାରରେ ଆସେ । ସମାଜର ଲୋକେ ପୂର୍ବ ପୁରୁଷଙ୍କ ଠାରୁ ସେହି ଲବ୍‌ଧ ବା ଉପାର୍ଜିତ ଜ୍ଞାନ ଉପରେ ଭିତ୍ତି କରି ଆଗକୁ ଅଗ୍ରସର ହୁଅନ୍ତି ଏବଂ ତାକୁ ପୁଣି ବର୍ଦ୍ଧନ କରନ୍ତି । ପୁରୁଷକୁ ପୁରୁଷ ଏହିଭଳି ଭାବରେ ଜ୍ଞାନକୁ ପରିପୁଷ୍ଟ କରିବା ଦ୍ୱାରା ସମାଜର ସଭ୍ୟତା କ୍ରମେ ଉନ୍ନତି କରେ । ଇତିହାସ ନ ଥିଲେ, ସଭ୍ୟତାର ଏ ପ୍ରକାର କ୍ରମିକ ବିକାଶ ବା ଉନ୍ନତି ଅସମ୍ଭବ ହୁଅନ୍ତା ।

ପରିଦୃଶ୍ୟମାନ ବିଶ୍ୱର ପ୍ରତ୍ୟେକ ଅଙ୍ଗ ସହିତ ଇତିହାସ ଓତପ୍ରୋତ ଭାବରେ ଜଡ଼ିତ । ଇତିହାସ ବିନା ସାହିତ୍ୟ, ବିଜ୍ଞାନ, ଗଣିତ, ଜ୍ୟୋତିଷ, ଭୂତତ୍ତ୍ୱ, ରସାୟନ, ଶିଳ୍ପ, ସ୍ଥାପତ୍ୟ, ସଂଗୀତ କିଂବା ଅନ୍ୟ କୌଣସି ବିଦ୍ୟା ଉନ୍ନତି କରିବା ତ ଦୂର କଥା, ତିଷ୍ଠି ପାରିବ ନାହିଁ । ସମାଜର ଜ୍ଞାନ ବା ସଭ୍ୟତା ଜୀବନ୍ତ, ପୁଷ୍ଟ, ଓ କ୍ରମବର୍ଦ୍ଧନଶୀଳ ହୋଇ ରହେ ଇତିହାସ ସାହାଯ୍ୟରେ ।

ସତ୍ୟର ଅନୁସନ୍ଧାନ ଇତିହାସର କାର୍ଯ୍ୟ । ଏହା ଏକାଧାରରେ କଳା ଓ ବିଜ୍ଞାନର କାର୍ଯ୍ୟ କରେ । ପରମାଣୁ ବୋମାର ବିଭିନ୍ନ ଉପାଦାନର ଗୁଣ, କାର୍ଯ୍ୟ ଓ ପ୍ରୟୋଗ ଯୁଗଯୁଗାନ୍ତରରୁ ଇତିହାସ ସମ୍ବାଦ ରଖି ଆସିଅଛି । ତାହା ହୋଇ ନ ଥିଲେ, ମାନବ ଆଜି ପରମାଣୁ ବୋମା ଉଦ୍ଭାବନ କରିବାରେ ସମର୍ଥ ହୋଇ ନ ଥାନ୍ତା । ପରମାଣୁ ସମ୍ବନ୍ଧୀୟ ଗବେଷଣାରେ ଇତିହାସ ଯୁଗଯୁଗାନ୍ତର ଧରି ମାନବକୁ ସାହାଯ୍ୟ କରି ଆସିଅଛି । ବୋମାର ତଥ୍ୟ ବିଶ୍ଳେଷଣ କରି ଇତିହାସର ସାହାଯ୍ୟ ବଳରେ ମାନବ ସତ୍ୟର ଅନୁସନ୍ଧାନ

କରିବାରେ ସମର୍ଥ ହୋଇଅଛି । ସତ୍ୟର ଅନୁସନ୍ଧାନ ନିମନ୍ତେ ବିଶ୍ଳେଷଣ ମୂଳକ କାର୍ଯ୍ୟରେ ଇତିହାସ ବିଜ୍ଞାନର କାର୍ଯ୍ୟ କରିଅଛି । ତୋମାର କାର୍ଯ୍ୟ ଓ ଗୁଣ ବର୍ଣ୍ଣନା କରି ଇତିହାସ କଳାର କାର୍ଯ୍ୟ କରିଅଛି । ତୋମାର ଓ ପରମାଣୁର ଉପକାର ଓ ଅପକାର ଖୋଜିବାକୁ ଯାଇ ଇତିହାସ ମାନବିକତା ଓ ପଶୁତ୍ୱର ଚିନ୍ତା ଉପସ୍ଥାପିତ କରିଅଛି ଏବଂ ତଦ୍ଦ୍ୱାରା ଦର୍ଶନର କାର୍ଯ୍ୟ କରିଅଛି ।

ମାନବର ବର୍ତ୍ତମାନ ଅଧିକାରରେ ଥିବା ସମସ୍ତ ଜ୍ଞାନ ଇତିହାସ ଯୋଗେ ହିଁ ଜୀବନ୍ତ ଓ କ୍ରମବର୍ଦ୍ଧିଷ୍ଣୁ ଆକାରରେ ରହିଅଛି । ଇତିହାସ ମାନବର ବିଦ୍ୟମାନ ସଭ୍ୟତାକୁ ବଞ୍ଚାଇ ରଖିଅଛି ଏବଂ ଯୁଗଯୁଗାନ୍ତର ଧରି ସେହି ସଭ୍ୟତାକୁ କ୍ରମେ ବଢ଼ାଇବାରେ ଲଗି ରହିଅଛି ।

ଇତିହାସର କାର୍ଯ୍ୟ ବିଶ୍ୱସଭ୍ୟତାର କ୍ରମବିକାଶର ପର୍ଯ୍ୟବେକ୍ଷଣ, ମନନ ଏବଂ ତଥ୍ୟ ବା ଦର୍ଶନ ନିର୍ଣ୍ଣୟ । ସତ୍ୟ ଅନୁସନ୍ଧାନ କରି ଭଲକୁ ଗ୍ରହଣ କରିବାରେ ଏବଂ ମନ୍ଦକୁ ବର୍ଜନ କରିବାରେ ଇତିହାସ ମାନବକୁ ସାହାଯ୍ୟ କରେ । ଇତିହାସ ବିଶ୍ୱ ସଙ୍ଗେ ମାନବର ସମ୍ପର୍କ ନିର୍ଣ୍ଣୟ କରେ ; ସତ୍ୟର, ତତ୍ତ୍ୱର, ସାରର ଗବେଷଣା କରେ, ଏବଂ ଏ ପ୍ରକାରେ ମାନବ ସମାଜର କଲ୍ୟାଣ ସାଧନ କରେ ।

ବିଶ୍ୱସୃଷ୍ଟି ତତ୍ତ୍ୱ ସମ୍ବନ୍ଧୀୟ ମାନବର ଲବ୍ଧ ଜ୍ଞାନକୁ ଇତିହାସ ବଞ୍ଚାଇ ରଖିଅଛି । କିପରି ସୂର୍ଯ୍ୟର ସୃଷ୍ଟି ହେଲା, ସୂର୍ଯ୍ୟ ଦେହରୁ ଗ୍ରହ ଉପଗ୍ରହର ଉଦ୍ଭବ ହେଲା, କିପରି ଉଦ୍ଭିଦ ଓ ଜୀବ ଜଗତର ସମ୍ଭବ ହେଲା, ପ୍ରକୃତି ସଙ୍ଗେ ମାନବର ସମ୍ପର୍କ କଣ,

ଇତ୍ୟାଦି ତତ୍ତ୍ୱ ଇତିହାସ ବଞ୍ଚାଇ ରଖି ଥିବାରୁ ମାନବ ସେହି ତତ୍ତ୍ୱକୁ ଗବେଷଣାରେ ଲଗାଇ ପାରୁଛି ଏବଂ ମାନବ ସଭ୍ୟତା କ୍ରମେ ଅଗ୍ରସର ହୋଇ ପାରୁଛି । ଅନ୍ୟଥା, ମାନବ ସଭ୍ୟତା ଗୋଟିଏ ସ୍ଥାନରେ ସ୍ଥିର ବା ସ୍ଥିତିଶୀଳ ହୋଇ ରହିଥାନ୍ତା । ଇତିହାସ ମାନବର ଗୋଟିଏ ପୁରୁଷର ଅଭିଜ୍ଞତା ବା ଲବ୍‌ଧଜ୍ଞାନକୁ ଅନ୍ୟ ପୁରୁଷକୁ ଦାନ କରୁଥିବାରୁ, ମାନବ ଏବେ ଆକାଶରେ ଉଡ଼ିବାକୁ ସମର୍ଥ ହୋଇଅଛି ଏବଂ ପରମାଣୁ-ସଭ୍ୟତାର ଯୁଗରେ ଆସି ପହଞ୍ଚିଅଛି ।

ମାନବ ସଭ୍ୟତାର ପ୍ରାଥମିକ ଅବସ୍ଥାରେ ଶିଳ୍ପର କିପରି ଉଦ୍ଭବ ହେଲା, ତାହା କିପରି ସାମାଜିକ ବେଷ୍ଟନୀରେ ପ୍ରବେଶ କଲା, କୁଟୀର ଶିଳ୍ପର କିପରି କ୍ରମିକ ଉନ୍ନତି ହେଲା ଏବଂ ଯନ୍ତ୍ରଶିଳ୍ପର କି ପରିଣତି ହେବ, ଏ ସମସ୍ତ ତଥ୍ୟର ଗବେଷଣାରେ ଇତିହାସ ଯଦି ସାହାଯ୍ୟ କରୁ ନ ଥାନ୍ତା, ତେବେ ଶିଳ୍ପର ତଥା ମାନବ ସଭ୍ୟତାର ବିକାଶ ଅସମ୍ଭବ ହୋଇ ଠିଆ ହୁଅନ୍ତା । ଶିଳ୍ପ ସଙ୍ଗେ ମାନବର ସମ୍ପର୍କ, ଶିଳ୍ପୋନ୍ନତିର ଉପାୟ ଓ ଶିଳ୍ପ ଦ୍ୱାରା ସମାଜର କଲ୍ୟାଣ ବିଧାନର ପଥ ଦେଖାଇବାରେ ଇତିହାସ ହିଁ ଏକମାତ୍ର ଅବଲମ୍ବନ ରୂପେ ରହିଅଛି ।

ବିଶ୍ୱପ୍ରକୃତି ସଙ୍ଗେ ମାନବର ସମ୍ପର୍କ ନିର୍ଣ୍ଣୟ କରିବା ଏବଂ ପ୍ରକୃତିକୁ ମାନବର ହିତରେ ନିୟୋଗ କରିବା ଉଭୟ ପ୍ରଚେଷ୍ଟା ଇତିହାସର ଦୃଷ୍ଟିକୋଣ ବଦଳାଇ ଦେଇଅଛି । ସେହି ହେତୁରୁ ଇତିହାସ ଆଜି ଆଉ ବ୍ୟକ୍ତି ବିଶେଷର ( ବା ରାଜା-ବିଶେଷଙ୍କର ) ଇତିହାସ ହୋଇ ରହିନାହିଁ । ଇତିହାସ ବୋଇଲେ

ଲୋକେ ଆଜି ମାନବ ସମାଜର ଇତିହାସକୁ ବୁଝନ୍ତି, ବିଶ୍ୱକୁ ଗୋଟାଏ ପରିବାର ବୋଲି ବୁଝନ୍ତି । ବିଶ୍ୱଜନୀନ ନିତ୍ୟ ସତ୍ୟର ଅନୁସନ୍ଧାନ ଓ ସମଗ୍ର ପୃଥିବୀର ହିତ ସାଧନ ଏବେ ଇତିହାସର କାର୍ଯ୍ୟ ହୋଇଅଛି ।

ଅଶୋକ କଣ ଖାଉଥିଲେ, କଣ ପିନ୍ଧୁଥିଲେ, କଣ କରୁଥିଲେ, କଣ ଭାବୁଥିଲେ, ଇତ୍ୟାଦି କଥା ଆମ୍ଭେ ଆଲୋଚନା କରୁ, ଯଦି ତହିଁରୁ ମାନବର କିଛି ଶିଖିବାର ଥାଏ, ସମାଜକୁ କିଛି ଉପକାର ମିଳିବାର ଥାଏ । ଅଶୋକଙ୍କ କଳିଙ୍ଗ ଯୁଦ୍ଧ କଥା ଆମ୍ଭେମାନେ ଆଲୋଚନା କରୁ, ତାଙ୍କ ଶୌର୍ଯ୍ୟବୀର୍ଯ୍ୟର ପରିଚୟ ନିମନ୍ତେ ନୁହେ କିମ୍ବା ତାଙ୍କ ସାମ୍ରାଜ୍ୟ ନିର୍ମାଣ ନିମନ୍ତେ ନୁହେ; ସେଥିର ଆଲୋଚନାର ଆବଶ୍ୟକତା ହୁଏ, କିପରି କଳିଙ୍ଗ ବାସୀଙ୍କର ସ୍ୱାଧୀନତାଲିପ୍ସା ସାମ୍ରାଜ୍ୟବାଦୀ ନିର୍ମମ ରାଜାଙ୍କର ହୃଦୟରେ ଅନୁତାପାନଳ ଜାଳି ଦେଇ ତଦାନୀନ୍ତନ ପୃଥିବୀରେ ଅହିଂସା ଧର୍ମର ବିଜୟପତାକା ଉଡ଼ାଇଲା, ସେହି ଅହିଂସାବାଦ କିପରି ଆଜି ପର୍ଯ୍ୟନ୍ତ ପୃଥିବୀରେ ଏକ ଆଦର୍ଶବାଦ ପ୍ରଚାର କରୁଅଛି, ହିଂସା ଜର୍ଜରିତ ପୃଥିବୀ ଆଜି କେବଳ ସେହି ନୀତିକୁ ଉଦ୍‌ଗ୍ରୀବ ନୟନରେ ସତୃଷ୍ଣ ଆଶାରେ ଚାହିଁ କିପରି ବିଶ୍ୱରେ ଶାନ୍ତି ସ୍ଥାପନର କଳ୍ପନା କରୁଅଛି । ତୁମ ଆମ ଭଳିଆ ଜଣେ ସାଧାରଣ ବ୍ୟକ୍ତି ଗାନ୍ଧି, ତାଙ୍କ ଜୀବନୀ ତାଙ୍କ ଇତିହାସକୁ ଆଜି ମାନବ ମାତ୍ରେ ସାଗ୍ରହ ତନ୍ନ ତନ୍ନ କରି ଆଲୋଚନା କରୁଛନ୍ତି । ଗାନ୍ଧି ପୃଥିବୀର ଇତିହାସକୁ ଏକ ଆଦର୍ଶବାଦ ଦେଇଗଲେ, ପୃଥିବୀର ଚିନ୍ତାଧାରାକୁ ବଦଳାଇ ଦେଇ ଗଲେ । ସେ ତାହା କିପରି ସାଧନ କଲେ, ଏବଂ ସମାଜ କିପରି

ତାଙ୍କର ନୀତି ଓ ଆଦର୍ଶ ଅନୁସରଣ କରିପାରିବ, ତାଙ୍କ ଆବିଷ୍କୃତ ସତ୍ୟ ପନ୍ଥାକୁ କିପରି କାର୍ଯ୍ୟରେ ଲଗାଇ ପାରିବ ; ଆଜି ଗାନ୍ଧିଙ୍କ ଇତିହାସ, ଗାନ୍ଧିଙ୍କ ଜୀବନୀ ପୃଥିବୀରେ ପ୍ରିୟ ଆଲୋଚନାର ସାମଗ୍ରୀ ହୋଇଅଛି । ଆଓରେଙ୍ଗଜେବଙ୍କ ଧର୍ମାନ୍ଧତା କିପରି ମୋଗଲ-ସାମ୍ରାଜ୍ୟର ପତନ ଓ ଭାରତର ଅଦ୍ଭୁତ ସାଧନ କଲା, ଭବିଷ୍ୟତ ସରକାରମାନେ ସେଥିରୁ କଣ ଶିକ୍ଷା କରିବେ, ସେଥି ସକାଶେ ଇତିହାସ ଆଓରେଙ୍ଗଜେବଙ୍କ ଧର୍ମନୀତି ବ୍ୟାଖ୍ୟାନ କରେ । ଅତି ସାଧାରଣ ବ୍ୟକ୍ତି ଜେମସ୍‌ୱାଟ୍ ଓ ଜର୍ଜ ଷ୍ଟିଫେନ୍‌ସନ୍ ବାଷ୍ପଯନ୍ତ୍ର ଓ ରେଲଗାଡ଼ି ଉଦ୍ଭାବନ କରି ମାନବ ସଭ୍ୟତାର ଇତିହାସକୁ ବଦଳାଇ ଦେଇଛନ୍ତି, ଇତିହାସ ତରିଦନ ସେମାନଙ୍କର କାର୍ଯ୍ୟକୁ ଆଲୋଚନା କରୁଥିବ । ଯେଉଁ ସମ୍ରାଟ୍ ବା କ୍ଷମତାପନ୍ନ ବ୍ୟକ୍ତି ନିଜ ଜୀବନରେ ସମାଜକୁ ଶିକ୍ଷଣୀୟ ବିଷୟ ବା ଉପକାର ମୂଳକ କିଛି ଦାନ କରି ଯାଇ ନାହାନ୍ତି, ଇତିହାସରେ ସେମାନଙ୍କର ସ୍ଥାନ ନାହିଁ ।

"I wish to write a history not of kings and wars, but of society.........but I want to know what were the steps by which men passed from barbarism to civilisation" (Voltaire).

ଅଳ୍ପ କଥାରେ, ରାଜା ବିଶେଷର, ବ୍ୟକ୍ତି ବିଶେଷର ଜୀବନୀକୁ ବର୍ଷ ମାସ ଦିନ କ୍ରମରେ ସଜାଇ ଆବୃତ୍ତି କରିବାକୁ ଲୋକେ ଦିନେ ଇତିହାସ ବୋଲି ବୁଝୁଥିଲେ ; ସେହି କାହାଣୀ ସଙ୍ଗେ ସମାଜର ଉପକାର, ଅପକାର, ସମାଜକୁ ଦାନ, ମାନବ

ସଭ୍ୟତାକୁ ଦାନ ପ୍ରଭୃତି କଥା ସଂଶ୍ଳିଷ୍ଟ ଅଛି କି ନାହିଁ, ସେ କଥା ଭାବୁ ନ ଥିଲେ । କିନ୍ତୁ ଊନବିଂଶ ଶତାବ୍ଦୀଠାରୁ ଇତିହାସର ଦୃଷ୍ଟି-କୋଣ କ୍ରମେ ବଦଳି ଯାଉଅଛି । ଇତିହାସର ଅଧ୍ୟାପନା ଓ ଆଲୋଚନା ବୈଜ୍ଞାନିକ ଗବେଷଣା ମୂଳକ ପରିଚ୍ଛଦ ନେଇଅଛି । ସମାଜର ସାମୂହିକ କଲ୍ୟାଣ ସାଧନ ପ୍ରତି ଇତିହାସର ଦୃଷ୍ଟି ଓ ଲକ୍ଷ୍ୟ ପଡ଼ିଅଛି । ସତ୍ୟର ଅନୁସନ୍ଧାନ ଇତିହାସର କାର୍ଯ୍ୟ ହୋଇଅଛି ।

"History is not simply information regarding affairs of kings who have passed away; but is a science which expands the intellect, and furnishes the wise with examples"— (Tarikh-i-Daudi).

ଅଧୁନା ପ୍ରାଚୀନ କାଳର ଖୋଦିତ ତାମ୍ରଶାସନ, ପ୍ରସ୍ତରଲିପି, ତାଳପତ୍ର ପୋଥି, ନଥିପତ୍ର, ଗ୍ରନ୍ଥ, ଦୁର୍ଗ, ଅଟ୍ଟାଳିକା, ପ୍ରାସାଦ, ଦେବାଳୟ, ଶିଳ୍ପସ୍ଥାପତ୍ୟ, କାରୁକାର୍ଯ୍ୟ, ମୁଦ୍ରା ପ୍ରଭୃତିର ଗବେଷଣା କରଯାଇ, ସେଥିରୁ ପ୍ରାପ୍ତ ତଥ୍ୟ ସବୁର ବୈଜ୍ଞାନିକ ପ୍ରଣାଳୀରେ ଆଲୋଚନା ଓ ବିଶ୍ଳେଷଣ ଦ୍ୱାରା ଇତିହାସର ତଥ୍ୟ ନିର୍ଣ୍ଣୟ କରା ଯାଉଅଛି, ପୁଣି ଐତିହାସିକମାନଙ୍କର ଚିନ୍ତାଧାରାକୁ ମଧ୍ୟ ବିଶ୍ଳେଷଣ କରି ସେଥିରୁ ସତ୍ୟର ଅନୁସନ୍ଧାନ କରା ଯାଉଅଛି । ଇତିହାସର ଏ ପ୍ରକାର ଦୃଷ୍ଟିଭଙ୍ଗୀର ପରିବର୍ତ୍ତନ ଓ ଆଲୋଡ଼ନ ମାନବ ସଭ୍ୟତାକୁ ବହୁ ଉଚ୍ଚକୁ ଟେକି ନେଇଅଛି, ଫଳରେ ମାନବର ବୁଦ୍ଧି ବୃତ୍ତିର ଓ ବିଚାରଣା ଶକ୍ତିର ବିକାଶ ନିମନ୍ତେ ଇତିହାସ ଏକ ଅତି ଉଚ୍ଚ କୋଟିର ବୈଜ୍ଞାନିକ ଶାସ୍ତ୍ରରେ ପରିଣତ ହୋଇଅଛି ।

"What men have done, and said, above all what they have thought—that is History" (Maitland).

ଇତିହାସ ଜୀବନ୍ତ ମାନବର, ବାସ୍ତବ ଘଟଣାର ଓ ବାସ୍ତବ ଦ୍ରବ୍ୟର ତତ୍ତ୍ୱ, କାର୍ଯ୍ୟ ଓ ଭାବଧାରାର ଆଲୋଚନା କରେ ଏବଂ ବାସ୍ତବ ଦୃଷ୍ଟାନ୍ତ ଯୋଗେ ଆମ୍ଭମାନଙ୍କୁ ନୀତି, ବା ତତ୍ତ୍ୱ ବା ସତ୍ୟଶିକ୍ଷା ଦିଏ । ଇସପ କଥା ବା ହିତୋପଦେଶ ଯେପରି କଳ୍ପନା ଯୋଗେ ଆମ୍ଭମାନଙ୍କୁ ଆଦର୍ଶବାଦ ଶୁଣାନ୍ତି, ଇତିହାସ ତା ନ କରି ପ୍ରକୃତ ମାନବର ବାସ୍ତବ କାର୍ଯ୍ୟର ଦୃଷ୍ଟାନ୍ତ ଆଣି ଆମ ଆଖି ଆଗରେ ଥୋଇଦିଏ । ଆମେ ସେଥିରୁ ବୁଝିପାରୁ, ଦିନେ ଯାହା ମାନବ ପକ୍ଷରେ ସମ୍ଭବ ହୋଇଥିଲା, ଏବେ ମଧ୍ୟ ଆମେ ତାହା କରି ପାରିବା, ବରଂ ସେତେବେଳର ମାନବ ଯାହା ଭୁଲ କରିଥିଲା, ସେହି ଭୁଲ ଯେପରି ପୁଣି ନ ହୁଏ, ସେଥିପ୍ରତି ଜଗିବା ।

"As nothing teaches, so nothing delights more than History"—(Locke).

ପ୍ରତ୍ୟକ୍ଷ ବାସ୍ତବ ଦୃଷ୍ଟାନ୍ତ ଇତିହାସର ଆଲୋଚ୍ୟ ବିଷୟ ହୋଇଥିବାରୁ ତାହାର ଆଲୋଡ଼ନ ସରସ ଓ ଚିତ୍ତାକର୍ଷକ ହୁଏ । ପ୍ରକୃତ ଘଟଣାର ଦାର୍ଶନିକ ଆଲୋଚନା ବା ପରିଚାଳନା ଜୀବନ୍ତ ଓ ହୃଦୟଗ୍ରାହୀ ହୁଏ । ଇତିହାସର ଏହି ବୈଜ୍ଞାନିକ ପରିଚ୍ଛଦ ଓ ପ୍ରଣାଳୀ ହେତୁ ବିଦ୍ୟାଳୟ ଶିକ୍ଷାରେ ଛାତ୍ରମାନଙ୍କର କଳ୍ପନାଶକ୍ତି

ଓ ଚରିତ୍ରାଧାରର ବିକାଶ ଓ ପୁଷ୍ଟି ସାଧିତ ହୁଏ । ଇତିହାସ ସର୍ବଦା କାର୍ଯ୍ୟକାରଣ ନିର୍ଣ୍ଣୟ କରୁଥିବାରୁ, ପରିଣାମର ଭଲମନ୍ଦ ତର୍କଣା କରୁଥିବାରୁ, ଇତିହାସ ଅଧ୍ୟୟନ ଓ ଆଲୋଚନାରେ ଅଧ୍ୟେତାର ମନୋବୃତ୍ତିର ଉତ୍କର୍ଷ ସାଧିତ ହୁଏ । ଅତଏବ ଇତିହାସ ଅଧ୍ୟାପନା ବିଦ୍ୟାଳୟ ଶିକ୍ଷାର ଏକ ଅତ୍ୟାବଶ୍ୟକ ଅଙ୍ଗ ହୋଇଅଛି ।



— ଦୁଇ —

# ଇତିହାସ ଶିକ୍ଷକ
## ଏବଂ
# ଇତିହାସ ଶିକ୍ଷାର ଲକ୍ଷ୍ୟ ଓ ଲାଭ

ଇତିହାସ ଶିକ୍ଷକଙ୍କ ଇତିହାସ ଜ୍ଞାନ ଓ କଳ୍ପନା ଉଚ୍ଚ କୋଟିର ହେଲେ, ସେ ନିଜ ବିଷୟ ବର୍ଣ୍ଣନାକୁ ଉପନ୍ୟାସର ପରିଚ୍ଛଦ ଦେଇ ପାରିବେ; ବିଶେଷତଃ ନିମ୍ନତର ଶ୍ରେଣୀମାନଙ୍କର ଶିକ୍ଷକ ବିଷୟବସ୍ତୁକୁ ଚିତ୍ତାକର୍ଷକ ଗଳ୍ପାକାରରେ ସଜାଇବାକୁ ସମର୍ଥ ହେବେ; ସର୍ବୋତ୍ତୋଽଧିକ ଉଭୟ ବିଭାଗର ଶିକ୍ଷକମାନେ ବିଷୟ-ବସ୍ତୁକୁ ବୈଜ୍ଞାନିକ ପ୍ରଣାଳୀରେ ଶିକ୍ଷା ଦେଇ ପାରିବେ ।

ଇତିହାସ ଶିକ୍ଷକ ସତ୍ୟର ଉପାସକ ହେବେ । ତାଙ୍କ ମନ ଉଦାର ଓ କଳଙ୍କଶୂନ୍ୟ ହେବା ଉଚିତ । ଜାତିଧର୍ମବର୍ଣ୍ଣ ନିର୍ବିଶେଷରେ ସେ ପ୍ରତିଭା ଓ ସତ୍କାର୍ଯ୍ୟର ଆଦର କରିବେ । ନିଜ ଜାତିର ସୁଦ୍ଧା ଭ୍ରମକୁ ନିନ୍ଦା କରିବେ ଏବଂ ଯେ କୌଣସି ଜାତିର ମହତ୍ତ୍ୱର ଗୁଣଗ୍ରାହୀ ହେବେ । ଦୃଷ୍ଟାନ୍ତ ସ୍ୱରୂପ ମୁସଲମାନ ଶିକ୍ଷକ ଆଓରଙ୍ଗଜେବଙ୍କ କିମ୍ବା ହିନ୍ଦୁ ଶିକ୍ଷକ ଶିବାଜୀଙ୍କ ନିନ୍ଦାରେ ବିଗିଡ଼ି ଯିବେ ନାହିଁ, କିମ୍ବା ସେମାନଙ୍କ ସମ୍ବନ୍ଧୀୟ ସମାଲୋଚନା ବା ସତ୍ୟ-

ପ୍ରତିପାଦନରେ ବିମୁଖତା ଦେଖାଇବେ ନାହିଁ । ନିଜ ଜାତିର ଲୋକ ଭୁଲ କରନ୍ତି ନାହିଁ କିମ୍ବା ଅନ୍ୟ ଜାତିର ଲୋକ ସର୍ବଦା ଭୁଲ କରନ୍ତି, ଏ ପ୍ରକାର ଧାରଣା ଇତିହାସ ଶିକ୍ଷକଙ୍କର କୁସଂସ୍କାରର ପରିଚୟସୂଚକ ।

ଇଂରାଜ ଜାତି ଭାରତକୁ ବାଣିଜ୍ୟ ଛଳନାରେ ଆସି ଛଳେ ବଳେ କୌଶଳେ ଭାରତ ଅଧିକାର କଲେ ଏବଂ ଭାରତକୁ ପରାଧୀନ କରି ଦେଶ ଶୋଷଣ କରିନେଲେ, ଇତିହାସ ଶିକ୍ଷକ ଏକଥା ଯେପରି ଜୋରରେ ଓ ନିର୍ଭିକାର ଚିତ୍ତରେ ଶିକ୍ଷା ଦେବେ, ଇଂରାଜ ଶାସନରେ ହୋଇଥିବା ଭାରତର ଉନ୍ନତି ଓ ଉପକାରର ମଧ୍ୟ ତଦ୍ରୂପ ଦୃଢ଼ ସ୍ୱରରେ ଆଲୋଚନା ଓ ପ୍ରଶଂସା କରିବେ ।

ଇତିହାସ ଶିକ୍ଷକ ସର୍ବଦା ନୂତନତମ ଐତିହାସିକ ଘଟନା ଓ ଗବେଷଣା ସମ୍ବନ୍ଧରେ ସୁବିଦିତ ରହିବେ । ବିଷୟଜ୍ଞାନ ଓ ଶିକ୍ଷାଦାନ ପ୍ରଣାଳୀ ଉଭୟରେ ଯାହାଙ୍କର ପୂର୍ଣ୍ଣ ପ୍ରବେଶ ଓ ଅଧିକାର ନାହିଁ, ସେପରି ବ୍ୟକ୍ତି ଇତିହାସ ଅଧ୍ୟାପନା କରିବାରେ ଅସାମର୍ଥ୍ୟ ପ୍ରକାଶ କରିଥାନ୍ତି ।

ବିଦ୍ୟାଳୟମାନଙ୍କରେ ଯେଉଁ ଭାବରେ ଇତିହାସର ଅଧ୍ୟାପନା ହୁଏ, ସେଥିରେ ଛାତ୍ରମାନଙ୍କର ଇତିହାସ ପ୍ରତି ଆଗ୍ରହ ସ୍ପୃହା ବା ରୁଚି ଜାତ ହୁଏ ନାହିଁ । ସ୍ଥାନେ ସ୍ଥାନେ ଉଚ୍ଚବିଦ୍ୟାଳୟର ଉଚ୍ଚତର ଶ୍ରେଣୀମାନଙ୍କର ଉପାଧ୍ୟାୟ ଶିକ୍ଷକମାନଙ୍କର ମଧ୍ୟ ଅଧ୍ୟାପନାଦକ୍ଷତା ବା ବିଷୟ ପ୍ରତି ସ୍ୱାଭାବିକ ସ୍ପୃହାର ଅଭାବ ଦେଖାଯାଏ । ମଧ୍ୟ ଶ୍ରେଣୀମାନଙ୍କରେ ସାଧାରଣରେ କାର୍ଯ୍ୟ ଚଳାଉ-ଥିବା ପ୍ରବେଶିକା ପରୀକ୍ଷୋତ୍ତୀର୍ଣ୍ଣ ଶିକ୍ଷକମାନଙ୍କର ବିଭାଗୀୟ

ସିଲବସ ବାହାରେ ଅଧିକ ଜ୍ଞାନ ନ ଥାଏ । ପ୍ରାଥମିକ ଶ୍ରେଣୀ-ମାନଙ୍କର ଶିକ୍ଷକମାନଙ୍କର ଐତିହାସିକ ଜ୍ଞାନ କିମ୍ବା ଶିକ୍ଷାଦାନକୁ ଜୀବନ୍ତ ଓ ଉପଯୋଗୀ କରାଇ ପାରିବାର ଆବଶ୍ୟକ ଗୁଣ ଥାଏ ବୋଲି ଜଣାପଡ଼େ ନାହିଁ । ଫଳରେ ଶିକ୍ଷକମାନେ ପାଠ୍ୟପୁସ୍ତକର ବିଷୟବସ୍ତୁକୁ କେବଳ ଚର୍ବିତଚର୍ବଣ କରନ୍ତି ଏବଂ ଛାତ୍ରମାନେ ଅଧୀତବ୍ୟ ବିଷୟବସ୍ତୁକୁ ଗଳାଧଃକୃତ କରି ଆବୃତ୍ତି କରିବାକୁ ବାଧ୍ୟ ହୁଅନ୍ତି । ଛାତ୍ରମାନଙ୍କର ବିଷୟ ପ୍ରତି ସ୍ୱାଭାବିକ ଆଗ୍ରହ ଜାତ ନ ହୋଇ ବରଂ ଦମିତ ହୁଏ । ଇତିହାସ ପ୍ରତି ଛାତ୍ରମାନଙ୍କର ଅନାଗ୍ରହ ବା ଆତଙ୍କ ଜାତ ହୁଏ । ପରୀକ୍ଷା ପ୍ରଣାଳୀର ଦୋଷରୁ ଛାତ୍ରମାନେ କୌଣସି ଢଙ୍ଗରେ କେତୋଟି ପ୍ରଶ୍ନର ଉତ୍ତର ଘୋଷିନେଇ ପରୀକ୍ଷାରେ ପାସ କରିଯାନ୍ତି । ପୁଣି ପାଠ୍ୟପୁସ୍ତକ ନିର୍ବାଚନରେ ତ୍ରୁଟି ରହୁଥିବାରୁ ଛାତ୍ରମାନଙ୍କର ମୁଖସ୍ଥୀକରଣରେ ମଧ୍ୟ ବିଷୟଗତ ଭ୍ରମ ରହିଯାଏ ଏବଂ ଇତିହାସ ଏକ ଦୁର୍ବୋଧ ଓ ନୀରସ ବିଷୟ ରୂପେ ଛାତ୍ରମାନଙ୍କର ମାନସିକ ବିକାଶରେ ଲାଭ ଦେବାଠାରୁ କ୍ଷତି ଅଧିକ କରେ । ଇତିହାସ ଅଧ୍ୟାପନାର ଲକ୍ଷ୍ୟ ଓ ଲାଭ ଏ ପ୍ରକାରେ ବ୍ୟର୍ଥ ହୁଏ ।

ବିଷୟରେ ପ୍ରବେଶ, ଗଭୀର ପାଣ୍ଡିତ୍ୟ ଓ ଅନ୍ତର୍ନିହିତ ଶ୍ରଦ୍ଧା ଇତିହାସ ଅଧ୍ୟାପକଙ୍କର ପ୍ରଧାନ ଗୁଣ । ଅନେକେ ମନେକରନ୍ତି ଅଶୋକଙ୍କ ବିଷୟରେ ପାଠ ଦେବାକୁ ଗଲେ, ଅଶୋକଙ୍କ ଜୀବନୀ ଓ କାର୍ଯ୍ୟ ପୁଙ୍ଖାନୁପୁଙ୍ଖ ରୂପେ ଜାଣିଥିଲେ ଶିକ୍ଷାଦାନରେ କୌଣସି ବ୍ୟାଘାତ ଘଟିବ ନାହିଁ । ଅଶୋକ କଳିଙ୍ଗ ଆକ୍ରମଣ କଲେ, ରକ୍ତନଦୀ ବୁହାଇ ଦେଲେ, କଳିଙ୍ଗ ପରାସ୍ତ ହେଲା, ଅଶୋକ କଳିଙ୍ଗ

କହିଲେ, ଏ ପ୍ରକାର ଅନେକ କଥା ଶିକ୍ଷକ ବକିଯାନ୍ତି, ଯାହାସବୁ ସେ ଜାଣିଥାନ୍ତି ବା ନିର୍ଦ୍ଦିଷ୍ଟ ପାଠ୍ୟପୁସ୍ତକରେ ଥାଏ । ସେ ଥରେ ହେଲେ ବୁଝନ୍ତି ନାହିଁ ଯେ ଏପ୍ରକାର ଶିକ୍ଷାଦାନ ଘୋଷାଠାରୁ ମଧ୍ୟ ହୀନ, କାରଣ ଛାତ୍ର ନିଜେ ପୁସ୍ତକରୁ ପଢ଼ି ଏସବୁ ଜାଣି ପାରିଥାନ୍ତେ । ଶିକ୍ଷକ ଆଉ ଶିକ୍ଷା ଦେଲେ କଣ ?

ଏପ୍ରକାର ପାଠରେ ଶିକ୍ଷକଙ୍କୁ ପୃଥିବୀର ଇତିହାସ ଜାଣିବାକୁ ହେବ । ଅଶୋକଙ୍କୁ କାହିଁକି ରକ୍ତନଦୀ ବୁହାଇବାକୁ ପଡ଼ିଲା ? କାର୍ଯ୍ୟକାରଣ ସମ୍ପର୍କ ନେଇ ତାହାର ବିସ୍ତୃତ ଆଲୋଚନା ନିମନ୍ତେ କଳିଙ୍ଗ ଜାତିର ପାରେସମୁଦ୍ର ବାଣିଜ୍ୟ ଓ ସାମ୍ରାଜ୍ୟ, ବୈଷୟିକ ଉନ୍ନତି, ଜନସଂଖ୍ୟା, ଶୌର୍ଯ୍ୟବୀର୍ଯ୍ୟ ଓ ସ୍ୱାଧୀନତାଲିପ୍ସାର ଅବତାରଣା କରିବାକୁ ହେବ ଏବଂ ତାହାର ସମୁଜ୍ଜ୍ୱଳ ଛବି ଛାତ୍ର-ମାନଙ୍କ ମନରେ ଆଙ୍କିବାକୁ ହେବ । ଚନ୍ଦ୍ରଗୁପ୍ତ ଓ ବିନ୍ଦୁସାର ମୌର୍ଯ୍ୟ ସେପାରି ପର୍ଯ୍ୟନ୍ତ ସାମ୍ରାଜ୍ୟ ବିସ୍ତାର କରିଥିଲେ ମଧ୍ୟ ମଝିରେ କଳିଙ୍ଗ କାହିଁକି ଅପରାଜିତ ରହିଥିଲା, ତାହାର ମଧ୍ୟ ସମ୍ଭାବ୍ୟ କାରଣ ନିର୍ଣ୍ଣୟ କରିବାକୁ ହେବ । କଳିଙ୍ଗରାଜାଙ୍କର କୋଶଳକୁ ପ୍ରସ୍ଥାନର କାରଣ ବନାନୀପୂର୍ଣ୍ଣ-ଆଦିମବହୁଳ କୋଶଳରେ ମେଘବଂଶର ରାଜତ୍ୱ, ମେଘବଂଶ ଓ ମେଘବାହନ (ଚେଦି) ବଂଶ ମଧ୍ୟରେ ସମ୍ପର୍କ ଇତ୍ୟାଦି ବିଷୟକ ବହୁଳ ଆଲୋଚନା ଶ୍ରେଣୀରେ ହେଲେ, ପାଠ ଜୀବନ୍ତ, ବର୍ଣ୍ଣନା ସରସ, ଜ୍ଞାନ ପରିଷ୍କାର ଓ ଦୃଢ଼ ଏବଂ ଆଗ୍ରହ ସଞ୍ଚାର ହେବ । ଏଥିସକାଶେ ଶିକ୍ଷକଙ୍କ ବହୁ ଗ୍ରନ୍ଥ ଅଧ୍ୟୟନ ଓ ପୂର୍ବ ପ୍ରସ୍ତୁତି ନିତାନ୍ତ ଆବଶ୍ୟକ ।

ଅଶୋକଙ୍କ ଧର୍ମପ୍ରଚାର କଥା ଶିକ୍ଷା ଦେବାକୁ ଗଲେ, ସେଥିପାଇଁ ବୁଦ୍ଧଙ୍କ ଜୀବଦ୍ଦଶାରେ ବୌଦ୍ଧଧର୍ମର ପ୍ରସାର, ଅନ୍ତର୍ବର୍ତ୍ତୀ କାଳରେ ବୌଦ୍ଧଧର୍ମର ଅବସ୍ଥା, ଭାରତ, ସିଂହଳ, ଏସିଆ, ଆଫ୍ରିକା ଓ ୟୁରୋପରେ ତଦାନୀନ୍ତନ ପ୍ରଚଳିତ ଧର୍ମ ଓ ଧର୍ମଚିନ୍ତା, ରାଜା ଓ ପ୍ରଜାମାନଙ୍କର ଚଳଣୀ, ସଭ୍ୟତା, ସଂସ୍କୃତି ପ୍ରଭୃତି ଅନେକ ବିଷୟରେ ଛାତ୍ରମାନଙ୍କର ଧାରଣା ଜନ୍ମାଇବାକୁ ହେବ । ଶିକ୍ଷକ ଯଦି କେବଳ ନିଜ ବହୁପୂର୍ବେ ଉପାର୍ଜିତ ଜ୍ଞାନ ଓ ଶ୍ରେଣୀର ପାଠ୍ୟପୁସ୍ତକ ଉପରେ ନିର୍ଭର କରି ସନ୍ତୁଷ୍ଟ ରହନ୍ତି, ସେ ଶିକ୍ଷାଦାନ କରିବେ ନାହିଁ ଯେ, ପାଠ୍ୟପୁସ୍ତକପ୍ରଣେତାଙ୍କ ଗ୍ରାମୋଫୋନରେ ପରିଣତ ହେବେ, ଯାହାକି ଛାତ୍ରମାନେ ନିଜ ଚେଷ୍ଟାରେ ଶିକ୍ଷକଙ୍କ ବିନା ସାହାଯ୍ୟରେ ବହି ପଢି ମଧ୍ୟ ଜାଣି ପାରିଥାନ୍ତେ ।

ଶିକ୍ଷକଙ୍କ ଗଭୀର ବିଷୟଜ୍ଞାନ, ଐତିହାସିକ ମନୋବୃତ୍ତି ଓ ଶ୍ରଦ୍ଧା ବିଷୟବସ୍ତୁରେ ଉନ୍ମାଦନା ନ ଥିଲେ, ବିଷୟବସ୍ତୁକୁ ଜ୍ୱଳନ୍ତ, ଜୀବନ୍ତ ଓ ଚିତ୍ତାକର୍ଷକ ଭାବରେ ଉପସ୍ଥାପନା କରିବାର ଶକ୍ତି ନ ଥିଲେ, ବାଗ୍ମିତାପୂର୍ଣ୍ଣ ସରସ ବର୍ଣ୍ଣନା ନ ଥିଲେ, ଇତିହାସର ଉପଜୀବ୍ୟ ଅତୀତ ବିଷୟକୁ ବର୍ତ୍ତମାନ ସଙ୍ଗେ ସମ୍ପର୍କ ଓ ସମନ୍ୱୟ ରଖି ବର୍ଣ୍ଣନାକୁ ସଜୀବ, ସରସ ଓ ଚିତ୍ତାକର୍ଷକ କରାଇବାର ଦୃଷ୍ଟିଭଙ୍ଗୀ ନ ଥିଲେ, ଅଧ୍ୟେତୃଗଣଙ୍କ ମନରେ ସ୍ପଷ୍ଟ ଜ୍ୱଳନ୍ତ ଛବି ଆଙ୍କିବାର କୌଶଳ ନ ଥିଲେ, ଇତିହାସ ଅଧ୍ୟାପନା ନିଷ୍ଫଳ ଓ ନୀରସ ହୁଏ ।

ଇତିହାସର ଉପଜୀବ୍ୟ ବିଷୟବସ୍ତୁ ଅତୀତର ଘଟଣା । ତାହାକୁ ବର୍ତ୍ତମାନର ରୂପ ନ ଦେଲେ, ଛାତ୍ରମାନେ ଅତୀତ ଘଟଣା ସମ୍ବନ୍ଧରେ ସମ୍ୟକ୍ ଧାରଣା କରି ପାରନ୍ତି ନାହିଁ । ସେଥି ସକାଶେ

ଇତିହାସ ଅଧ୍ୟାପକଙ୍କ କେତେକ ବିଶେଷ ଗୁଣ ଥିବା ଆବଶ୍ୟକ । ଇତିହାସ ଅଧ୍ୟାପକ ବର୍ତ୍ତମାନ ଜଗତ୍ ସମ୍ବନ୍ଧରେ ଦୂରଦର୍ଶୀ ଓ ଅଭିଜ୍ଞ ହେବେ । କେଉଁଠାରେ କଣ ଘଟୁଛି, ପୃଥିବୀରେ ସାମାଜିକ, ରାଜନୈତିକ, ଅର୍ଥନୈତିକ କି କି ପରିବର୍ତ୍ତନ ବା ବିକାଶ ହେଉଛି, ଇତ୍ୟାଦି ସମ୍ବନ୍ଧରେ ସେ ସର୍ବଦା ସୁବିଦିତ ରହିବେ । ଛାତ୍ରର ପୂର୍ବାର୍ଜିତ ଜ୍ଞାନ, ମାନସିକ ବିକାଶ ଓ ବର୍ତ୍ତମାନ ଜ୍ଞାନର ସ୍ତର ସମ୍ବନ୍ଧରେ ତାଙ୍କର ପୂର୍ଣ୍ଣ ଧାରଣା ରହିବ । ଛାତ୍ର ପଢ଼ୁଥିବା ଅନ୍ୟାନ୍ୟ ଆନୁସାଙ୍ଗିକ ପାଠ ସାହିତ୍ୟ, ଭୂଗୋଳ, ବିଜ୍ଞାନ ପ୍ରଭୃତି ବିଷୟରେ ସେ ଘନିଷ୍ଠ ଭାବରେ ପରିଚିତ ରହିବେ ଏବଂ ସେହି ସମସ୍ତ ବିଷୟ ସଙ୍ଗେ ସମନ୍ୱୟ ରଖି ସେ ନିଜ ଅଧ୍ୟାପନାର ବିଷୟବସ୍ତୁର ପରିକଳ୍ପନା କରିବେ ।

ଇତିହାସ ଶିକ୍ଷକ ଛାତ୍ରମାନଙ୍କ ପ୍ରତି ସହାନୁଭୂତିଶୀଳ ହେବେ, ସେମାନଙ୍କ ଅଭାବ ଓ ଦୁର୍ବଳତା ହୃଦୟଙ୍ଗମ କରିବାକୁ ସମର୍ଥ ହେବେ । ସେମାନଙ୍କର ସ୍ୱତଃଶକ୍ତିକୁ ଅଯଥା ଖର୍ବାହିତ ନ କରି ସେମାନଙ୍କ କଳ୍ପନା, ବିଚାରଣା ଓ ତର୍କଣା ଶକ୍ତିର ବିକାଶ କରିବାକୁ ଚେଷ୍ଟା କରିବେ ।

ଇତିହାସ ଶିକ୍ଷକ ସର୍ବଦା ଚେଷ୍ଟା କରିବେ, ସେ କିପରି ଚକ୍ଷୁ ସାହାଯ୍ୟରେ ଶିକ୍ଷା ଦେବେ । ଏଥିସକାଶେ କଳାପଟା, ମାନଚିତ୍ର, ନାନାପ୍ରକାର ଛବି ଓ ଶିକ୍ଷାଦାନ ଉପକରଣ ସର୍ବଦା ବ୍ୟବହାର କରିବେ । ସାଧାରଣତଃ ଦେଖା ଯାଇଥାଏ, ଶିକ୍ଷକମାନେ ଆତ୍ମପ୍ରସାଦ ଅନୁଭବ କରନ୍ତି, ଯଦି ସେମାନେ ଛାତ୍ରର ପେଟ ଭିତରକୁ ପାଠ୍ୟପୁସ୍ତକର ସମସ୍ତ ବର୍ଣ୍ଣନା ଅଥବା ତହିଁ ବାହାରେ

ଆହୁରି କିଛି ଅଧିକ ନୂଆ ବିଷୟ ଅଜାଡ଼ି ଦେଇ ପାରିଲେ, ଯେପରି କି ମୁଣ୍ଡବାଲା ଭିତରକୁ ପବନ ଭର୍ତ୍ତି କରି ଦିଆଯାଏ । ସେମାନେ ଆହୁରି ଦେଖନ୍ତି, ଛାତ୍ରମାନେ ଶିକ୍ଷକଙ୍କ ବର୍ଣ୍ଣିତ କଥା ମନେ ରଖି ପାରିଲେ କି ନାହିଁ ଏବଂ ତାହାକୁ ପୁଣି ଶୁଆ ପରି ଆବୃତ୍ତି କରି ପାରୁଛନ୍ତି କି ନାହିଁ ।

ଅବଶ୍ୟ, ଇତିହାସର ବିଷୟ ଛାତ୍ରକୁ ମନେ ରଖିବାକୁ ହେବ । ଅବଶ୍ୟ ପୁସ୍ତକରୁ ନ ପଢ଼ି ଶିକ୍ଷକଙ୍କ ମୁହଁରୁ ଶୁଣିଲେ, ଛାତ୍ରକୁ ଶିଖିବା ବା ଜାଣିବା ଅପେକ୍ଷାକୃତ ସହଜ ହେବ । କିନ୍ତୁ ପେଟ ଭିତରକୁ କେବଳ ବର୍ଣ୍ଣନା ଅଜାଡ଼ିଦେବା ଜ୍ଞାନଦାନ ବା ଅଧ୍ୟାପନା ନୁହେ, ଅଧ୍ୟାପନାର ଅର୍ଥ ମାନସିକ ଉତ୍କର୍ଷ ଓ ବିକାଶ ସାଧନ । ଛାତ୍ର ସ୍ୱାଧ୍ୟାୟ ଦ୍ୱାରା ଯାହା ପୁସ୍ତକରୁ କରି ପାରିଥାନ୍ତା, ତାହା ଯଦି ଶିକ୍ଷକଙ୍କ ମୁହଁ ସାହାଯ୍ୟରେ କଲା, ସେଥିରେ ତାହାର ବିଶେଷ ଲାଭ କିଛି ହେଲା ନାହିଁ ।

ପ୍ରତ୍ୟକ୍ଷ ବର୍ଣ୍ଣନାଦ୍ୱାରା ଛାତ୍ରର ସ୍ମୃତିପଟରେ ଅନେକ ଗୁଡ଼ାଏ ବିଷୟ ଆଙ୍କିଦେବା ଅଥବା ଘଟନାଗୁଡ଼ାଏ ଛାତ୍ରକୁ ନିବେଦନ କରିଦେବା ଇତିହାସ ଅଧ୍ୟାପନାର ଲକ୍ଷ୍ୟ ନୁହେ । ଶିକ୍ଷକଙ୍କ କର୍ତ୍ତବ୍ୟ ସତ୍ୟ ଆବିଷ୍କାର କରିବାରେ, ତର୍କଣା କରିବାରେ, କାର୍ଯ୍ୟକାରଣ-ଫଳ ବିଚାରନ କରିବାରେ, ଅନୁସନ୍ଧାନ, ଗବେଷଣା, ତଥ୍ୟ-ନିର୍ଣ୍ଣୟରେ, ଭଲମନ୍ଦ—ବିଚାରଣାରେ ଛାତ୍ରକୁ ସାହାଯ୍ୟ କରିବେ, ଛାତ୍ରର ମସ୍ତିଷ୍କ ଚାଳନା ଓ ବିକାଶରେ ସାହାଯ୍ୟ କରିବେ । ଛାତ୍ରର କଳ୍ପନା ଶକ୍ତିର ଜାଗରଣ ଏବଂ ଚିନ୍ତାଧାରା ଓ ମନୋବୃତ୍ତିର ବିକାଶ ଶିକ୍ଷକଙ୍କ ପ୍ରଧାନ ଓ ମୂଳ ଲକ୍ଷ୍ୟ ।

ପ୍ରତ୍ୟକ୍ଷ ବର୍ଣ୍ଣନା ପରିବର୍ତ୍ତେ ଛାତ୍ର କପରି ତର୍କଣାଦ୍ୱାରା ବର୍ଣ୍ଣନା ଶିକ୍ଷା କରିବ ? ଇତିହାସ ପାଠରେ ଏହା ଅନେକ ସମୟରେ ସମ୍ଭବ ନୁହେଁ । ତଥାପି ଶିକ୍ଷକ ଅବହିତ ହେଲେ ଏବଂ ଚେଷ୍ଟା କଲେ, ଅଧିକାଂଶ ପାଠରେ ଏହା ସମ୍ଭବ ହେବ । ଛାତ୍ର ନିଜର ଆବଶ୍ୟକ ଉପାର୍ଜନୀୟ ଜ୍ଞାନ ନିଜେ ଆବିଷ୍କାର କରି ଶିକ୍ଷା ଲାଭ କରିବ । ଏପରି ପ୍ରଣାଳୀରେ ଲବ୍ଧ ଜ୍ଞାନ ଚିରସ୍ଥାୟୀ ହେବ, ଛାତ୍ରର ମନୋବୃତ୍ତିର ବିକାଶ ଘଟିବ ଏବଂ ଇତିହାସ ପ୍ରତି ଛାତ୍ରର ସ୍ପୃହା ଓ ଶ୍ରଦ୍ଧା ଜାତ ହେବ ।

ଗୋଟିଏ ଦୃଷ୍ଟାନ୍ତ ଦ୍ୱାରା ଏହା ଦେଖାଯାଉ । ଶିକ୍ଷକ ଦଶମ ବା ଏକାଦଶ ଶ୍ରେଣୀର ଛାତ୍ରମାନଙ୍କୁ 'ସିରାଜ ଓ ଇଂରାଜମାନଙ୍କ ମଧ୍ୟରେ କଳି'ର କାରଣ ଶିକ୍ଷା ଦେବାକୁ ଚାହାନ୍ତି । ଇଂରାଜମାନଙ୍କ ଫୋର୍ଟଉଇଲିୟମର ସଂସ୍କାର କଳିର ଗୋଟିଏ କାରଣ । ପାଠ୍ୟପୁସ୍ତକରୁ ଶିକ୍ଷକ ଯାହା ପାଇଲେ, କିମ୍ବା ପ୍ରସ୍ତୁତ ହୋଇ ବା ଚିନ୍ତା କରି ଆସି ନ ଥିବାରୁ, ଯେତିକି ପାରିଲେ, ସେତିକି ଶିକ୍ଷା ଦେବାକୁ ଯାଇ ଛାତ୍ରମାନଙ୍କୁ କେବଳ କହିଦେଲେ ଯେ ଫୋର୍ଟ ଉଇଲିୟମ ସିରାଜଙ୍କ ରାଜ୍ୟ ମଧ୍ୟରେ ଥିଲା । ଇଂରାଜମାନେ ନବାବଙ୍କ ଅନୁମତି ନେଇ ଦୁର୍ଗସଂସ୍କାର କରିବା ଉଚିତ ଥିଲା । ଅନୁମତି ନେବା ତ ଦୂର କଥା, ନବାବଙ୍କ ବାରଣ ନ ମାନି, ସେମାନେ ଦୁର୍ଗସଂସ୍କାର କରିବାରୁ ନବାବ ଚିଡ଼ିଲେ । ଏଥିରେ ଛାତ୍ରମାନଙ୍କ କଳ୍ପନା, ବିଚାରଣା ବା ତର୍କଣା ଶକ୍ତିର ବିକାଶ ହେଲା ନାହିଁ, ଶିକ୍ଷା ପୂର୍ଣ୍ଣତା ପାଇଲା ନାହିଁ କିମ୍ବା ଜ୍ଞାନଲାଭ ଚିତ୍ତାକର୍ଷକ ହେଲା ନାହିଁ ।

ଶିକ୍ଷକ ଏହା ପୂର୍ବେ ସାର୍ ଟୋମାସ ରୋ ଓ ଜାହାଙ୍ଗିରଙ୍କ ସମ୍ପର୍କ ଏବଂ ଭାରତରେ ଇଂରାଜମାନଙ୍କ ବାଣିଜ୍ୟ ଅଧିକାର ଲାଭ ଓ ବାଣିଜ୍ୟକୋଠି ସ୍ଥାପନ ଶିକ୍ଷା ଦେଇଛନ୍ତି, ଭାରତର କେଉଁ କେଉଁ ସ୍ଥାନରେ ଇଂରାଜମାନଙ୍କର ବାଣିଜ୍ୟ କୋଠି ଥିଲା ତାହା ମଧ୍ୟ ଶିକ୍ଷା ଦେଇଛନ୍ତି । ଏହା ପୂର୍ବାର୍ଜିତଜ୍ଞାନର ଆବୃତ୍ତିଦ୍ୱାରା ଛାତ୍ରମାନଙ୍କର ବର୍ତ୍ତମାନ ଜ୍ଞାନର ଭିତ୍ତି ସ୍ଥାପନ କରିବେ । ଭାରତର ମାନଚିତ୍ରରେ ସ୍ଥାନମାନ ଦେଖାଇ, ହୁଗୁଳୀ ନଦୀ କୂଳରେ ଥିବା କଲିକତା ସହର ଓ ଫୋର୍ଟଉଇଲିୟମର ଛବି ଦେଖାଇ, ଛାତ୍ରମାନଙ୍କର ଭୌଗୋଳିକ ଜ୍ଞାନ ସଙ୍ଗେ ସମ୍ପୃକ୍ତ କରିବେ ଏବଂ ଏହା ଫୋର୍ଟ ଉଇଲିୟମ କାହାଣୀ ପ୍ରଶ୍ନୋତ୍ତର ଛଳରେ କ୍ରମେ ଶିକ୍ଷା ଦେବେ । ପ୍ରଶ୍ନୋତ୍ତର ପ୍ରଣାଳୀରେ ଶିକ୍ଷାଦାନ କଲେ ଶିକ୍ଷକଙ୍କ ବାଗ୍‌ଯନ୍ତ୍ର ଉପରେ ଚାପ ପଡ଼ିବ ନାହିଁ, ଛାତ୍ରମାନଙ୍କ ସ୍ମରଣ ଶକ୍ତିର ବିକାଶ ହେବ ।

ଇଂରାଜମାନେ ହୁଗୁଳୀ ସହରରେ ବାଣିଜ୍ୟକୋଠି ସ୍ଥାପନ କରିଥିଲେ । ସେମାନେ ଶୁଳ୍କ ଦେବା ବିଷୟରେ ବଙ୍ଗଳାର ଶାସନକର୍ତ୍ତା ଶାୟିସ୍ତା ଖାଁଙ୍କ ସଙ୍ଗେ କଳି କଲେ । ବାଣିଜ୍ୟକୋଠିର ଗଭର୍ଣ୍ଣର ଯୋଶିଆ ଚାଇଲ୍ଡ ଇଂଲଣ୍ଡର ରାଜା ଦ୍ୱିତୀୟ ଜେମସଙ୍କ ଅନୁମତି ସହ ଆଓରଙ୍ଗଜେବଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ (୧୬୮୬) । ଚାଇଲ୍ଡ ଅସ୍ତ୍ରବଳରେ ଭାରତରେ ରାଜ୍ୟ ଅଧିକାର କରିବା କଳ୍ପନା କରୁଥିଲେ । ପ୍ରାରମ୍ଭରୁ ଇଂରାଜ-ମାନେ ବଳ ପ୍ରୟୋଗଦ୍ୱାରା ଭାରତରେ ଇଂରାଜରାଜ୍ୟ ସ୍ଥାପନର ଉଦ୍ଦେଶ୍ୟରେ ରହିଥିଲେ । କିନ୍ତୁ ପ୍ରବଳ ମୋଗଲମାନେ ସେମାନଙ୍କ

ଶକ୍ତିର ବହିର୍ଭୂତ ଥିଲେ । ଆଓରଙ୍ଗଜେବ ସେମାନଙ୍କୁ ବଙ୍ଗଳାରୁ ତଡ଼ିଦେଲେ । ବଳରେ ନ ପାରି, ଇଂରାଜମାନେ ପୁଣି କାକୁତିରେ ଆଶ୍ରୟ ନେଲେ । କ୍ଷମା ପ୍ରାର୍ଥନା କରି ୧୬୯୦ରେ ଜବ ଚାର୍ଣ୍ଣକ ପୁଣି ବଙ୍ଗଳାରେ ବାଣିଜ୍ୟ କରିବା କ୍ଷମତା ଫେରି ପାଇଲେ ।

ଛାତ୍ରମାନଙ୍କ ମନରେ ଏହି ଜ୍ଞାନ ଜୀବନ୍ତ ଓ ହୃଦୟଗ୍ରାହୀ କରିବା ନିମନ୍ତେ, ସମ୍ରାଟ୍ ଆଓରଙ୍ଗଜେବ ତଦାନୀନ୍ତନ ବଙ୍ଗ ଶାସନକର୍ତ୍ତା ଇବ୍ରାହିମ ଖାଁଙ୍କୁ ୧୬୯୦ ଏପ୍ରିଲ ୨୩ ତାରିଖରେ ଦେଇଥିବା ନିମ୍ନଲିଖିତ ଆଦେଶନାମାକୁ ମୁଦ୍ରିତ କରି ଛାତ୍ରମାନଙ୍କୁ ପ୍ରତ୍ୟକ୍ଷରେ ପଢ଼ିବା ପାଇଁ ଦେବେ ।

"You must understand that it has been the good fortune of the English to repent of their irregular past proceedings; and they, not being in their former greatness, have, by their vakils, petitioned for their lives and pardon for their faults, which out of my extraordinary favour towards them I have accordingly granted. Therefore, upon receipt here of my Firman, You must not create them any further trouble, but let them trade freely in your government as formerly. And this order I expect you to see strictly obeyed."

ଏଥିରୁ ଛାତ୍ରମାନଙ୍କ ମନରେ ଇଂରେଜମାନଙ୍କ କୁଟିଳ ଚକ୍ରାନ୍ତ, ମୋଗଲର ବଳ, ଦୟା, କ୍ଷମା ଓ ଉଦାସୀନ୍ୟ ରାଜନୈତିକ ପରିସ୍ଥିତି ବିଷୟରେ ଏକ ସ୍ପଷ୍ଟ ଓ ଜ୍ୱଳନ୍ତ ଛବି ଅଙ୍କିତ ହେବ । ପରନ୍ତୁ ମୋଗଲ ଶକ୍ତିର ଦୁର୍ବଳତାର ସୁବିଧା ନେଇ ଇଂରେଜମାନେ କିପରି କୃତଘ୍ନତା ଆଚରଣ କଲେ ଏବଂ ନିଜ ଦୁରଭିସନ୍ଧି ପୂରଣ କଲେ, ସେ ସମ୍ବନ୍ଧରେ ଛାତ୍ରମାନେ ସ୍ପଷ୍ଟ ଧାରଣା କରିବେ । ଇଂରେଜମାନେ କାହିଁକି ସିରାଜଙ୍କ ଅନୁମତି ନ ନେଇ ଦୁର୍ଗ ସଂସ୍କାର କଲେ, ସେକଥା ଭଲ ରୂପେ ବୁଝିପାରିବେ । ଜ୍ଞାନ ପୂର୍ଣ୍ଣତା ପାଇବ ଓ ଚିରସ୍ଥାୟୀ ହେବ ।

ଏହା ପରେ ଉତ୍କଳର ଜମିଦାର ଶୋଭାସିଂହ କିପରି ଆଫଗାନ ସର୍ଦ୍ଦାର ରହିମ ଖାଁଙ୍କ ସାହାଯ୍ୟ ନେଇ ବର୍ଦ୍ଧମାନର ନବାବ କୃଷ୍ଣରାମଙ୍କୁ ବିବ୍ରତ କଲେ ଏବଂ ଲୁଣ୍ଠତରାଜ ଚଳାଇବାରୁ କିପରି ଆଓରଙ୍ଗଜେବ ୧୬୯୬ରେ ଇଂରେଜମାନଙ୍କୁ ଫୋର୍ଟ ଉଇଲିୟମ ଦୁର୍ଗନିର୍ମାଣ ପାଇଁ ଅନୁମତି ଦେଲେ, ସେକଥାର ଉତ୍ଥାପନ କରାଯିବ । ସମ୍ରାଟ୍ ଆଓରଙ୍ଗଜେବଙ୍କ ମୃତ୍ୟୁ ପରେ ମୋଗଲ ଶାସନର ଦୁର୍ବଳତା ଇଂରେଜମାନଙ୍କର ସାହସ ବଢ଼ାଇ- ଦେଲା । ଇଷ୍ଟ ଇଣ୍ଡିଆ କମ୍ପାନିର ଡାଇରେକ୍ଟରମାନେ ବଙ୍ଗଳର ସୁବାଦାରଙ୍କ ପ୍ରତିରୋଧ କରିବା ଉଦ୍ଦେଶ୍ୟରେ ନାନା ଛଳନା କରି ଦୁର୍ଗକୁ ନାନାପ୍ରକାରରେ ବଢ଼ାଇଲେ ଏବଂ ଦୃଢ଼ କରିବାକୁ ଲାଗିଲେ ।

ଉଇଲିୟମ ହାମିଲଟନ ନାମକ ଜଣେ ଇଂରାଜ ଡାକ୍ତର ୧୭୧୪ରୁ ୧୭୧୭ ମଧ୍ୟରେ ସମ୍ରାଟ ଫରୁକଶିୟାରଙ୍କ ଚିକିତ୍ସା କରି

ତାଙ୍କର ପ୍ରିୟପାତ୍ର ହେଲେ ଏବଂ କମ୍ପାନି ସକାଶେ ନାନାପ୍ରକାର ସୁବିଧା ଫର୍ମାନରେ ଲେଖାଇନେଲେ ।

୧୭୩୯ ଖ୍ରୀଷ୍ଟାବ୍ଦରେ ନାଦିରସାହ ଦିଲ୍ଲୀ ଆକ୍ରମଣ କରି କର୍ଣ୍ଣାଲ ଯୁଦ୍ଧରେ ମୋଗଲଶକ୍ତିକୁ ଚୂର୍ଣ୍ଣ କରିଦେଲେ । ୧୭୬୧ରେ ତୃତୀୟ ପାନିପଥ ଯୁଦ୍ଧରେ ଆହମ୍ମଦ ସାହ ଦୁରାଣୀ ମହାରାଷ୍ଟ୍ର ଶକ୍ତିକୁ ଚୂର୍ଣ୍ଣ କରିଦେଲେ । ଭାରତର ରାଜନୈତିକ ପରିସ୍ଥିତି ନୈରାଶ୍ୟ-ଜନକ ହେଲା । ଇଂରାଜମାନଙ୍କ ଦୁରଭିସନ୍ଧି ପୂର୍ଣ୍ଣ ହେବାର ସୁଯୋଗ ଆସିଗଲା ।

ନାଦିରସାହଙ୍କ ଆକ୍ରମଣ ପରେ ପରେ ୧୭୪୦ରେ ଆଲ୍ଲାବର୍ଦ୍ଦି ଖାଁ ବଙ୍ଗଳର ନବାବ ହୋଇ ସ୍ୱାଧୀନତା ଘୋଷଣା କଲେ । ତାଙ୍କ ଅମଳରେ ଇଂରାଜମାନେ ତାଙ୍କୁ ଡରୁଥିଲେ, କିନ୍ତୁ ମହାରାଷ୍ଟ୍ରମାନେ ବଙ୍ଗଳା ଲୁଣ୍ଠନ ଆରମ୍ଭ କଲେ । ତେଣୁ ଇଂରାଜ-ମାନଙ୍କୁ ଏକ ଛଳନାର କାରଣ ମିଳିଗଲା । ସେମାନେ ନବାବଙ୍କୁ କହିଲେ, ମହାରାଷ୍ଟ୍ର ଲୁଣ୍ଠନରୁ ଆତ୍ମରକ୍ଷା ସକାଶେ ସେମାନଙ୍କ ଦୁର୍ଗକୁ ଦୃଢ଼ ରୂପେ ନିର୍ମାଣ କରିବା ଦରକାର । ନବାବଙ୍କ ସଙ୍ଗେ ବନ୍ଧୁଭାବ ଦେଖାଇ, ଇଂରାଜମାନେ ନିଜ ଉଦ୍ଦେଶ୍ୟ ସାଧନ କରୁଥିଲେ ।

୧୭୫୬ରେ ସିରାଜୁଦ୍ଦୌଲା ନବାବ ହେଲେ । ସେ ବାଳକ ଥିବାରୁ ଇଂରାଜମାନେ ତାଙ୍କୁ ଦୁର୍ବଳ ମନେ କରି, ନିଜ

ଚକ୍ରାନ୍ତ ପୂରଣ କରିବା ଅଭିସନ୍ଧିରେ ରହିଲେ । ସେମାନଙ୍କର ତ ଦୁରଭିସନ୍ଧି ଥିଲା, ଛଳେ ବଳେ କୌଶଳେ ବଙ୍ଗଳାରେ ରାଜ୍ୟସ୍ଥାପନ କରିବେ । ସିରାଜଙ୍କ ଅନୁମତି ନେବେ କାହିଁକି ? ସେ ବାରଣ କଲେ ବା ମାନିବେ କାହିଁକି ?

ଇଂରାଜମାନେ କୌଣସି ବ୍ୟପଦେଶରେ କଳି କରିବାକୁ ଖୋଜୁଥିଲେ । ବଳକାର ଦୁର୍ଗ ସଂସ୍କାର କଲେ । କଳି ହେଲା । ପଲାସି ଯୁଦ୍ଧ ହେଲା । ବଙ୍ଗଳାରେ ଇଂରାଜ ରାଜ୍ୟ ପ୍ରତିଷ୍ଠା ହେଲା ।

ଅଧ୍ୟାପନାର ଏପରି ପରିବର୍ତ୍ତନ ଦ୍ୱାରା ଛାତ୍ରମାନେ ଇତିହାସର ଉଦ୍ଦେଶ୍ୟ ବିଷୟବସ୍ତୁ ସମ୍ବନ୍ଧରେ ସ୍ପଷ୍ଟ ଓ ଜୀବନ୍ତ ଛବି ଚରିତ୍ରଙ୍କ ଆକାରରେ ପାଇଲେ । ସ୍ମୃତି ଅଯଥା ଭାରାକ୍ରାନ୍ତ ହେଲା ନାହିଁ । ଶିକ୍ଷାର ଫଳ ଦୀର୍ଘସ୍ଥାୟୀ ହେଲା । ତାହା ବାହାରେ ଇତିହାସ ଅଧ୍ୟାପନାର ପ୍ରଧାନ ଲକ୍ଷ୍ୟ କଳ୍ପନା, ବିଚାରଣା ଓ ତର୍କଣା ଶକ୍ତିର ଉଦ୍ରେକ ହେଲା ।

ଶିକ୍ଷକ ଯେ ଛାତ୍ରମାନଙ୍କୁ ଜଗତର ସବୁ ଶିଖାଇଦେବେ, ଏପରି କାହାର ଆଶା ବା ବିଶ୍ୱାସ କରିବା କଥା ନାହିଁ । କିନ୍ତୁ କୌଣସି ବିଷୟବସ୍ତୁ ବା ସମସ୍ୟା ସେମାନଙ୍କ ଆଗରେ ଥୋଇ-ଦେଲେ, ସେମାନେ ନିଜ ସ୍ୱାଧୀନ ବିଚାର ବଳରେ ବିଷୟବସ୍ତୁକୁ ଅନୁଧ୍ୟାନ କରି ପାରିବେ, ସମସ୍ୟାକୁ ସମାଧାନ କରି ପାରିବେ । ଛାତ୍ରମାନଙ୍କର ସେହି ଶକ୍ତିକୁ ବିକାଶ କରାଇଦେବା, ଶିକ୍ଷକଙ୍କ

କାର୍ଯ୍ୟ । ସେହି ଲକ୍ଷ୍ୟ ସିଦ୍ଧ ହେଲେ, ଶିକ୍ଷକଙ୍କ ଅଧ୍ୟାପନାର ଫଳ ଲାଭ ହୋଇଅଛି ବୋଲି ମନେ କରାଯିବ । ଶିକ୍ଷକ କେତେ ପଢ଼ାଇଲେ, ଏହା ତାଙ୍କର ଲକ୍ଷ୍ୟ ନୁହେଁ । ସେ କିପରି ପଢ଼ାଇଲେ, ତାହା ଶିକ୍ଷାଦାନର ଲକ୍ଷ୍ୟ ଓ ଲାଭ ଅଟେ ।

ଇତିହାସ ଶିକ୍ଷକଙ୍କ ସର୍ବଦା ଚେଷ୍ଟା ରହିବ, ଛାତ୍ରମାନେ କିପରି ସତ୍ୟର ଅନୁସନ୍ଧାନ କରିପାରିବେ; ଅତୀତ ସମ୍ବନ୍ଧୀୟ ଜ୍ଞାନ ଉପାର୍ଜନ ବଳରେ ବର୍ତ୍ତମାନ ସଭ୍ୟତା ଓ ସଂସ୍କୃତିର କିପରି ଉଦ୍ଭବ ଓ ବିକାଶ ହୋଇଅଛି ତାହା ବୁଝିପାରିବେ; ଅତୀତର ଅଭିଜ୍ଞତାରୁ ବର୍ତ୍ତମାନ ପରିସ୍ଥିତିରେ କିପରି ଚଳିବାକୁ ଶିଖିବେ । ଅତୀତରେ କେଉଁ ବ୍ୟକ୍ତି ବା ଜାତି କେଉଁ ପରିସ୍ଥିତିରେ କି ଆଚରଣ କରି ଉନ୍ନତ ବା ଅବନତ କରିଥିଲେ, ଉପକାର ବା ଅପକାର ପାଇଥିଲେ, ଏବଂ ତାଦୃଶ ପରିସ୍ଥିତିରେ ବର୍ତ୍ତମାନ ବ୍ୟକ୍ତି ବା ଜାତି ପକ୍ଷରେ କିପରି ଆଚରଣ କରିବାକୁ ହେବ, ତାହା ବିଶ୍ଳେଷଣ ଓ ବିଚାର କରିବାକୁ ଛାତ୍ରମାନେ ଶିଖିବେ । ଅତୀତର ଦୃଷ୍ଟାନ୍ତରୁ ବ୍ୟକ୍ତି ବା ଜାତିର ସତ୍ ଓ ନ୍ୟାୟ୍ୟ ଆଚରଣକୁ ଶ୍ରଦ୍ଧା କରିବାକୁ ଏବଂ ଅସତ୍ ଓ ଅନ୍ୟାୟ୍ୟ ଆଚରଣକୁ ଘୃଣା କରିବାକୁ ଶିଖିବେ, ଭଲକୁ ଶିଖିବେ ଏବଂ ଭ୍ରମକୁ ତ୍ୟାଗ କରିବେ । ବ୍ୟକ୍ତିଗତ ସ୍ୱାର୍ଥତ୍ୟାଗ କରି ଉଦାରତା, ଦେଶପ୍ରେମ, ନୈତିକ ଜ୍ଞାନ ପ୍ରଭୃତି ଗୁଣ ଅର୍ଜନ କରିବାକୁ ଶିଖିବେ ।

ସ୍କୁଲରେ ଇତିହାସ ପାଠର ପ୍ରଧାନ ଲାଭ ହେଉଛି ମାନସିକ ଉତ୍କର୍ଷ ଓ ବିକାଶ ସାଧନ (Cultural value), ଯାହା

ବଳରେ ଆମ୍ଭେମାନେ ସତ୍ୟ ଓ ନ୍ୟାୟକୁ ପ୍ରେମ କରୁ, ମିଥ୍ୟା ଓ ଅନ୍ୟାୟକୁ ଘୃଣା କରୁ, ସ୍ୱାର୍ଥକୁ ବଳି ଦେଇ ସମାଜର ହିତ ସାଧନ କରୁ, ହୃଦୟର ସଂକୀର୍ଣ୍ଣତା ବର୍ଜନ କରି ଉଦାରତା ଶିକ୍ଷା କରୁ ଏବଂ ଅଳ୍ପ କଥାରେ ପାଶବିକତାରୁ ଉଠି ମାନବିକତା ଶିକ୍ଷା କରୁ । ଇତିହାସ ଶିକ୍ଷକ ନିଜର ଏହି ଲକ୍ଷ୍ୟ ସାଧନରୁ ଯେପରି କେତେବେଳେ ବିଚଳିତ ନ ହୁଅନ୍ତି ।



—ତିନି—

# ପାଠ୍ୟ ଓ ପାଠ୍ୟପୁସ୍ତକ

ପୂର୍ବେ " ତାହାଙ୍କର " ( ବ୍ୟକ୍ତିବିଶେଷଙ୍କର-His ) "କାହାଣୀ" (ଜୀବନୀ-Story) କୁ ଇତିହାସ କହାଯାଉଥିଲା । ରାଜା ବା ବଡ଼ଲୋକଙ୍କର ଦୈନନ୍ଦିନ ଜୀବନର ଘଟଣାବଳୀକୁ ତାରିଖ ମାସ ବର୍ଷ ସହ ଆମ୍ଭେମାନେ ଇତିହାସ ରୂପେ ପଢ଼ୁଥିଲେ । ଏବେ ସେହି ଧାରଣା ସଂପୂର୍ଣ୍ଣ ବଦଳି ଯାଇଛି । ଆଧୁନିକ ସଭ୍ୟତା ଓ ସଂସ୍କୃତିର ଉଦ୍ଭବ, ବିକାଶ ଓ ପରିଣତିର ବିବରଣୀକୁ ଏବେ ଇତିହାସ କହାଯାଉଅଛି । ସେହି ସଭ୍ୟତା ସଂସ୍କୃତି ସଙ୍ଗେ ସମାଜର ଓ ବ୍ୟକ୍ତିର ସମ୍ପର୍କ ନିର୍ଣ୍ଣୟ କରିବା ଏବେ ଇତିହାସର କାର୍ଯ୍ୟ ହୋଇଅଛି ।

ଇତିହାସର ଏହି ନୂତନ ଅର୍ଥ ସଙ୍ଗେ ସାମଞ୍ଜସ୍ୟ ରଖି ଏବେ ଇତିହାସର ପାଠ୍ୟବସ୍ତୁ (Courses of Study) ପ୍ରଣୀତ ହେବା ଉଚିତ ଏବଂ ତଦନୁସାରେ ପାଠ୍ୟପୁସ୍ତକ ଲିଖିତ ହେବା ଉଚିତ । ରାଜା ଓ ଶାସକମାନଙ୍କର କାହାଣୀ, ଯୁଦ୍ଧର କାହାଣୀ ପ୍ରଭୃତି ପାଠ୍ୟ ଓ ପାଠ୍ୟପୁସ୍ତକରେ ସେହି ଅନୁପାତରେ ରହିବ, ଯେଉଁ ପରିମାଣରେ ରାଜା, ଶାସକ ବା ଯୁଦ୍ଧ ପ୍ରଭୃତି ଦେଶର ଓ ମାନବଜାତିର ସଭ୍ୟତା ଓ ସଂସ୍କୃତିର ଗଠନ ବା ପରିବର୍ତ୍ତନ ଓ ବିକାଶରେ ପ୍ରଭାବ ପକାଇଛନ୍ତି ବା ସାହାଯ୍ୟ କରିଛନ୍ତି ।

ସୃଷ୍ଟିର ଆରମ୍ଭରୁ ଇତିହାସ ମାନବଜାତିର ଓ ବିଶାଳ ପୃଥିବୀର ସଭ୍ୟତା ଓ ସଂସ୍କୃତିର ବିବରଣୀ। ସେଥିରେ ମାନବ ଜାତିର ରାଜନୈତିକ, ସାମାଜିକ ଓ ସାଂସ୍କୃତିକ ବିଭିନ୍ନ ସମସ୍ୟା ଓ ବିଭବ ଜଡ଼ିତ । ସମସ୍ତ ଜାତିର ବିବରଣୀ ରଖିବା ଏକ ବିରାଟ ସମସ୍ୟା । ବିଦ୍ୟାଳୟରେ ଅଳ୍ପ ସମୟ ମଧ୍ୟରେ ଏବଂ ଛାତ୍ରମାନଙ୍କର ବୟସ ଓ ମାନସିକ ବିକାଶ ଦୃଷ୍ଟିରେ ତାହା ଶିକ୍ଷା ଦେବା ତଥା ବିଦ୍ୟାଳୟ ଉପଯୋଗୀ ପାଠ୍ୟ ପୁସ୍ତକ ପ୍ରଣୟନ କରିବା ଅତ୍ୟନ୍ତ କଠିନ ସମସ୍ୟା । ସେଥିଲାଗି ପାଠ୍ୟବସ୍ତୁ ବଛାବଛି କରିବା ମଧ୍ୟ ନିଶ୍ଚିତ ଏକ କଠିନ ସମସ୍ୟା । କର୍ତ୍ତାମାନେ ପାଠ୍ୟବସ୍ତୁ ପ୍ରଣୟନ କରିବା ବେଳେ ଗଭୀର ଚିନ୍ତା କରି ତାହା ପ୍ରଣୟନ କରିବା ଉଚିତ ।

ବିଶାଳ ପୃଥିବୀ ବିଭିନ୍ନ ଦେଶ ଓ ଅଞ୍ଚଳରେ ବିଭକ୍ତ । ସମସ୍ତ ଦେଶ ବା ସମସ୍ତ ଅଞ୍ଚଳର ଲୋକେ ଗୋଟିଏ ଗୋଷ୍ଠୀରେ ରହନ୍ତି ନାହିଁ । ପ୍ରତ୍ୟେକ ଦେଶ ବା ଅଞ୍ଚଳର ବିଭିନ୍ନ ରାଜନୈତିକ, ସାମାଜିକ ଓ ଆର୍ଥନୈତିକ ସମସ୍ୟାମାନ ରହିଅଛି । ଆଞ୍ଚଳିକ ବିଭିନ୍ନ ସମସ୍ୟାମାନ ଥିଲେ ମଧ୍ୟ ମାନବଜାତିର ସାଧାରଣ ସଭ୍ୟତା ଓ ସଂସ୍କୃତି ସବୁଙ୍କ ପ୍ରତ୍ୟେକ ଅଞ୍ଚଳର, ପ୍ରତ୍ୟେକ ବ୍ୟକ୍ତିର ସମ୍ପର୍କ ଓ ପ୍ରଭାବ ରହିଅଛି ।

ସୁତରାଂ, ମାନବ ଜାତିର ସଭ୍ୟତା ଓ ସଂସ୍କୃତିର ଇତିହାସରୁ ସାଧାରଣ ବିବରଣୀ ଆହରଣ କରିବା ଆମ୍ଭମାନଙ୍କ ପକ୍ଷରେ ଅପେକ୍ଷାକୃତ ସହଜସାଧ୍ୟ ହୋଇପଡ଼େ । ଆଞ୍ଚଳିକ ସମସ୍ୟା-ମାନ ଆମ୍ଭେମାନେ ଛାଡ଼ିଦେଉଁ ଏବଂ ପୃଥିବୀର ସାଧାରଣ

ସମସ୍ୟାରେ ବିଭିନ୍ନ ଜାତି ବା ବ୍ୟକ୍ତି ଓ ଘଟନା ଯେଉଁ ପ୍ରଭାବ ପକାଇଛନ୍ତି, ତାହାକୁହିଁ ପୃଥିବୀର ସାଧାରଣ ଇତିହାସ ରୂପେ ଗ୍ରହଣ କରୁ । ଆଞ୍ଚଳିକ ଇତିହାସ ସେହି ଅଞ୍ଚଳର ଲୋକଙ୍କର ପାଠ୍ୟ ହୋଇ ରହେ ।

ଅଳ୍ପ କେତେକ ବର୍ଷ ପୂର୍ବେ ଭାରତର ଲୋକେ ଭାରତର ଇତିହାସ ମାତ୍ର ଜାଣି ସନ୍ତୁଷ୍ଟ ରହୁଥିଲେ । କିନ୍ତୁ ଏବେ ପୃଥିବୀ ଗୋଟିଏ ପରିବାରରେ ପରିଣତ ହୋଇଅଛି । ବ୍ରହ୍ମ ଦେଶରୁ ଚାଉଳ ନ ଗଲେ ରୁଷ ଚଳିପାରୁ ନାହିଁ, କାନାଡ଼ା ଓ ଅଷ୍ଟ୍ରେଲିଆରୁ ଭାରତକୁ ଗହମ ଆସୁଛି । ଆମେରିକାର ହଲିଉଡ଼ରେ ନିର୍ମିତ ସିନେମା ଚିତ୍ର ଆମ୍ଭେମାନେ ଦେଖୁଁ । ଆମେରିକା, ଇଂଲଣ୍ଡରେ ଚାଲୁଥିବା ରେଡ଼ିଓ ସଙ୍ଗୀତ ଶୁଣୁଁ । ଉଡ଼ାଜାହାଜରେ ଚଢ଼ି ଦିନେ ଦୁଇ ଦିନ ଭିତରେ ପୃଥିବୀ ପର୍ଯ୍ୟଟନ କରୁଛୁଁ । ସହସ୍ର ସହସ୍ର ଭାରତୀୟ ଛାତ୍ର ପୃଥିବୀର ବିଭିନ୍ନ ଦେଶରେ ଶିକ୍ଷା ଲାଭ କରନ୍ତି । ଭାରତ ଓ ପାକିସ୍ଥାନର ରାଜନୈତିକ ସମସ୍ୟା, କାଶ୍ମୀର ବିସମ୍ବାଦରେ ପୃଥିବୀର ବିଭିନ୍ନ ଦେଶ ଜଡ଼ିତ ରହୁଅଛି । ଅଷ୍ଟ୍ରିଆ ଓ ସାର୍ବିଆର ସାମାନ୍ୟ ଏକ କଳି ସମସ୍ୟାରେ ଏକ ପୃଥିବୀ ମହାସମର ଘଟିଗଲା । ଗୋଟିଏ ଦେଶ ପରମାଣୁ ବା ଉଦଜାନ ବୋମା ଆବିଷ୍କାର କଲେ, ସେହି ବୋମା ବଳରେ ସମଗ୍ର ପୃଥିବୀକୁ ଧ୍ୱଂସ କରିଦେବ । କୌଣସି ଦେଶକୁ, କୌଣସି ଅଞ୍ଚଳକୁ ନିଜ ଅସ୍ତିତ୍ୱ ରକ୍ଷା କରିବାକୁ ହେଲେ ଆଜି ପୃଥିବୀର ଇତିହାସ, ପୃଥିବୀର ସମସ୍ୟା ଅନୁଧ୍ୟାନ କରିବାକୁ ହେବ । ଜାତି ଜାତି ମଧ୍ୟରେ କଳି ହୋଇ ପୃଥିବୀ ମହାସମରର ଆକାର ଧାରଣ କରୁଅଛି, ପୃଥିବୀର ଜାତିମାନଙ୍କର ଧ୍ୱଂସ ଯଜ୍ଞରେ

ଅନିବାର୍ଯ୍ୟ ହୋଇ ପଡ଼ୁଅଛି । ଗୋଟିଏ ଛୋଟ ପରମାଣୁ ବୋମା ଯୋଗେ ଏକ ବିଶାଳ ଦେଶ, ଏକ ବିରାଟ ଜାତି ପୃଥିବୀପୃଷ୍ଠରୁ ପୋଛି ହୋଇଯିବେ । ସୁତରାଂ ପୃଥିବୀର ସମସ୍ୟା ସମାଧାନ କରିବାକୁ ଜାତି ଜାତି ମଧ୍ୟରେ ସହଯୋଗ ଓ ସମ୍ପର୍କ ସ୍ଥାପନ କରିବାକୁ ହେବ ।

ଏହି ସହଯୋଗ ଓ ସମ୍ପର୍କ ସ୍ଥାପନ ନିମନ୍ତେ ଏବେ ଏକ ବିଶ୍ୱଜାତିସଂଘ ସ୍ଥାପିତ ହୋଇଅଛି । ଆନ୍ତର୍ଜାତୀୟ "ବିଶ୍ୱ ସରକାର" ସ୍ଥାପନ ଏକ ଅତ୍ୟାବଶ୍ୟକ ସମସ୍ୟା ହୋଇ ପଡ଼ିଅଛି । ଜଣା ଯାଉଅଛି, ସମଗ୍ର ପୃଥିବୀର ରାଜନୈତିକ, ସାମାଜିକ ଓ ଆର୍ଥନୈତିକ ଶାସନ ଓ ନିୟନ୍ତ୍ରଣ ଏହି ବିଶ୍ୱସରକାର ସମାଧାନ ନ କଲେ, ପୃଥିବୀରେ ଘୋର ଅରାଜକତା ଓ ଧ୍ୱଂସ ଅବଶ୍ୟମ୍ଭାବୀ ହେବ । ପୃଥିବୀ ଗୋଟିଏ ଘର, ଗୋଟିଏ ପରିବାର ଓ ଗୋଟିଏ ଅନୁଷ୍ଠାନ ହେବାକୁ ଯାଉଅଛି ଏବଂ ନିକଟରେ ଏହା ବାସ୍ତବତାରେ ପରିଣତ ହେବ । ଏହି ବିଶ୍ୱସରକାରର ନିର୍ଦ୍ଦେଶରେ ପ୍ରତ୍ୟେକ ଦେଶର ସରକାର ନିଜ ଆଭ୍ୟନ୍ତରୀଣ ନୀତି ନିୟନ୍ତ୍ରଣ କରିବେ ଏବଂ ଜାତୀୟ ବା ଦେଶୀୟ ସରକାରର ନିର୍ଦ୍ଦେଶରେ ଆଞ୍ଚଳିକ ସରକାରମାନେ ଚାଲିବେ ।

ଆଜି ଉଡ଼ାଜାହାଜ ଓ ପରମାଣୁ ବୋମାର ଯୁଗରେ ପ୍ରତ୍ୟେକ ଦେଶର ପ୍ରତ୍ୟେକ ଅଧିବାସୀକୁ ଆଞ୍ଚଳିକ ଓ ଦେଶୀୟ ଇତିହାସ ସଙ୍ଗେ ପୃଥିବୀର ଇତିହାସ ଜାଣିବାକୁ ହେବ ଏବଂ ପୃଥିବୀର ସଭ୍ୟତା, ସଂସ୍କୃତି ଓ ସମସ୍ୟା ସଙ୍ଗେ ପରିଚିତ ହୋଇ ଚାଲିବାକୁ ହେବ । କୌଣସି ଦେଶ, କୌଣସି ଅଞ୍ଚଳ ଏବେ ପୃଥିବୀରୁ ବିଚ୍ଛିନ୍ନ ହୋଇ ନ ପାରେ । କୌଣସି ବ୍ୟକ୍ତି ପୃଥିବୀ ସଙ୍ଗେ

ସମ୍ପୃକ୍ତ ନ ରହି ନିଜର ବ୍ୟକ୍ତିତ୍ୱ ଓ ବୈଶିଷ୍ଟ୍ୟ ରଖି ନ ପାରେ ; ଆଞ୍ଚଳିକ ଓ ଦେଶୀୟ ଇତିହାସ ଅପେକ୍ଷା ପୃଥିବୀର ସାମୂହିକ ଇତିହାସର ଉପଯୋଗିତା ଏ ଯୁଗରେ ଅଧିକ ଆବଶ୍ୟକ ହୋଇ ପଡ଼ିଅଛି ।

ପ୍ରତ୍ୟେକ ଦେଶର ଅଧିବାସୀ ପକ୍ଷରେ ପୃଥିବୀର ଇତିହାସ ଜାଣିବା ଅତ୍ୟାବଶ୍ୟକ ହୋଇ ପଡ଼ିଥିଲେ ହେଁ ଦେଶର ବା ନିଜ ଜାତିର "ଜାତୀୟ ଇତିହାସ" ଏବଂ ନିଜ ଅଂଚଳର "ଆଞ୍ଚଳିକ ଇତିହାସ"କୁ ଭୁଲିଗଲେ, କେହି ଚଳି ପାରିବ ନାହିଁ । ପୃଥିବୀର ସଭ୍ୟତା ଓ ସଂସ୍କୃତି ସମସ୍ୟା ସଙ୍ଗେ ତାହାର ଜାତୀୟ ସଭ୍ୟତା ଓ ସଂସ୍କୃତି ସମସ୍ୟା ଓତପ୍ରୋତ ଭାବରେ ଜଡ଼ିତ । ଜାତୀୟ ସଭ୍ୟତା ଓ ସଂସ୍କୃତି ସମସ୍ୟା ସଙ୍ଗେ ତାହାର ଆଞ୍ଚଳିକ ସଭ୍ୟତା ଓ ସଂସ୍କୃତି ସମସ୍ୟା ମଧ୍ୟ ସେହିପରି ଓତପ୍ରୋତ ଭାବରେ ଜଡ଼ିତ । ଆଞ୍ଚଳିକ ସଭ୍ୟତା ଓ ସଂସ୍କୃତି ସଙ୍ଗେ ବ୍ୟକ୍ତିର ଘନିଷ୍ଠ ସମ୍ପର୍କ ରହିଅଛି । ସୁତରାଂ ପ୍ରତ୍ୟେକ ସାକ୍ଷର ଓ ଶିକ୍ଷିତ ବ୍ୟକ୍ତିକୁ ବ୍ୟକ୍ତି ରୂପେ ଅସ୍ତିତ୍ୱ ରଖିବାକୁ ହେଲେ, ପୃଥିବୀର ଇତିହାସ ସଙ୍ଗେ ନିଜ ଦେଶର ଓ ନିଜ ଅଞ୍ଚଳର ଇତିହାସ ଜାଣିବାକୁ ହେବ ।

ଏହି ଆଲୋଚନା ଦୃଷ୍ଟିରୁ ଆମ୍ଭମାନଙ୍କୁ ପ୍ରତ୍ୟେକ ଦେଶର ପ୍ରତ୍ୟେକ ଜାତିର ଶିକ୍ଷକମାନଙ୍କୁ ବିଦ୍ୟାଳୟର ପାଠ୍ୟ, ପାଠ୍ୟପୁସ୍ତକ ଓ ଇତିହାସ ଶିକ୍ଷା ସଙ୍ଗଠନ କରିବାକୁ ହେବ ।

ବିଶ୍ୱ ସଭ୍ୟତା ଓ ସଂସ୍କୃତିର କ୍ରମବିକାଶର ବିଶାଳ ଇତିହାସ ଏବଂ ବିଶ୍ୱସମସ୍ୟାମାନଙ୍କର ସମାଧାନ ବିଦ୍ୟାଳୟରେ

ଶିକ୍ଷା ଦେବାକୁ ଗଲେ, ଆମ୍ଭମାନଙ୍କୁ ସେହି ପାଠ୍ୟକୁ ତିନୋଟି ପ୍ରଧାନ ଅଙ୍ଗରେ ବିଭକ୍ତ କରିବାକୁ ହେବ ।

(୧) ପୃଥିବୀର ବା ବିଶ୍ୱମାନବ ଜାତିର ଇତିହାସ ।

(୨) ଦେଶର ବା ଭାରତବର୍ଷର ଜାତୀୟ ଇତିହାସ ।

(୩) ନିଜ ଅଞ୍ଚଳର ବା ରାଜ୍ୟର ଇତିହାସ ।

ଏହି ତିନି ଅଙ୍ଗକୁ ପୁଣି ବିଭିନ୍ନ ଦୃଷ୍ଟିକୋଣ ବା ବିଷୟରୁ ବିଚାର କରିବାକୁ ହେବ : ସାମାଜିକ, ରାଜନୈତିକ ଓ ଆର୍ଥନୈତିକ ।

ଇତିହାସ ପାଠ୍ୟର ଏହି ବିଭିନ୍ନ ଅଙ୍ଗ ଅର୍ଥାତ୍ ପୃଥିବୀ ଇତିହାସ, ରାଷ୍ଟ୍ର ଇତିହାସ ଓ ରାଜ୍ୟଇତିହାସ ଛାତ୍ର ପକ୍ଷରେ ଜାଣିବା ଯେପରି ଦରକାର, ତିନି ଅଙ୍ଗର ବିଭିନ୍ନ ବିଷୟ ଅର୍ଥାତ୍ ସାମାଜିକ, ରାଜନୈତିକ ଓ ଆର୍ଥନୈତିକ ସମସ୍ୟାସବୁର ବିଶ୍ଳେଷଣ ମଧ୍ୟ ଜାଣିବା ଛାତ୍ରପକ୍ଷରେ ସେହିପରି ଦରକାର । ସାମାଜିକ ସଂସ୍ଥା ମଧ୍ୟରେ ଶିକ୍ଷା, ସାହିତ୍ୟ, ବିଜ୍ଞାନ, ବାଣିଜ୍ୟ, ଶିଳ୍ପ, କଳା, କାରୁକାର୍ଯ୍ୟ, ଧର୍ମ, ସଂସ୍କୃତି ପ୍ରଭୃତି ସମସ୍ତ ଅନ୍ତର୍ଗତ । ଏହାକୁ ଛାଡ଼ିଦେଲେ ମାନବ ମାନବ ହୋଇ ରହିବ ନାହିଁ । ଇତିହାସର ଅର୍ଥ ରହିବ ନାହିଁ । ରାଜନୈତିକ ଇତିହାସ ସାମାଜିକ ସଂସ୍ଥାର ମେରୁଦଣ୍ଡ । ଶାନ୍ତି ଓ ବିପ୍ଳବ ସାମାଜିକ ସଂସ୍ଥାକୁ ନିୟନ୍ତ୍ରଣ କରେ । ଇତିହାସ ଅତୀତର ରାଜନୀତି ( "History is past politics." ) । ବିପ୍ଳୁତ ବା ଅଶାନ୍ତିମୟ ଭୂଖଣ୍ଡରେ ସାମାଜିକ ସଂସ୍ଥାର ଧ୍ୱଂସ ନିଶ୍ଚିତ, ତାହାର ଉନ୍ନତି, ବା ବିକାଶ ବିପନ୍ନ । ଆର୍ଥନୈତିକ ସମସ୍ୟା ସାମାଜିକ ଓ ଓ ରାଜନୈତିକ ସଂସ୍ଥାକୁ ନିୟନ୍ତ୍ରଣ କରେ । ଯନ୍ତ୍ରଶିଳ୍ପର ପ୍ରବର୍ତ୍ତନ ପୃଥିବୀରେ ଦୁଇଟି ଶ୍ରେଣୀର ସୃଷ୍ଟି କରିଅଛି, ପୁଞ୍ଜିପତି ଓ ଶ୍ରମିକ ।

ଶ୍ରମିକମାନେ ପୁଞ୍ଜିପତି ହାତରୁ ଶିଳ୍ପ ଛଡ଼ାଇ ନେବାକୁ ବସିଛନ୍ତି । ଫଳରେ ପୃଥିବୀରେ ଏକ ଶ୍ରେଣୀଯୁଦ୍ଧ ବା "ଶ୍ରମିକ—ପୁଞ୍ଜିପତି ସମସ୍ୟା" ଉପଗତ ହୋଇଅଛି । ଶ୍ରମିକମାନେ ପ୍ରତି ଦେଶରେ ସଙ୍ଗଠିତ ହୋଇ ସଂଘମାନ ସ୍ଥାପନ କରି ରାଜନୈତିକ ଆନ୍ଦୋଳନ କରି ଆସିଛନ୍ତି । ସରକାରମାନଙ୍କୁ ସେମାନଙ୍କର ଆନ୍ଦୋଳନ ନିୟନ୍ତ୍ରଣ କରିବା ଏକ ଶାସନସମସ୍ୟାରେ ପରିଣତ ହୋଇଅଛି । ଊନବିଂଶ ଶତାବ୍ଦୀର ଜର୍ମାନୀର ବୈଜ୍ଞାନିକ ଓ ଶିଳ୍ପଉନ୍ନତି ବା ଆର୍ଥନୈତିକ ସମସ୍ୟାର ଫଳରେ ପ୍ରଥମ ପୃଥିବୀ ମହାସମର ଘଟିଲା । ଜର୍ମାନୀର କାଇଜର ଦ୍ୱିତୀୟ ଉଇଲିୟମ ଜର୍ମାନୀର ଶିଳ୍ପଜାତ ରପ୍ତାନି ଓ ବିକ୍ରି କରିବା ନିମନ୍ତେ ଏକ ଆର୍ଥନୈତିକ ସାମ୍ରାଜ୍ୟ ଖୋଜିଲେ । ଉଇଲିୟମ ତୁରସ୍କର ସମ୍ରାଟଙ୍କ ସଙ୍ଗେ ରାଜନୈତିକ ବନ୍ଧୁତା ସ୍ଥାପନ କଲେ । ତୁରସ୍କର ସମ୍ରାଟ୍ ସୁଲତାନ ଅବଦୁଲ ହମିଦ ତାଙ୍କ ବନ୍ଧୁ ହେବା ଫଳରେ ବାଗଦାଦ ରେଲବେ ନିର୍ମିତ ହେଲା । ଏହି ରେଲବେ ବସଫୋରସରୁ ବାଗଦାଦ ପର୍ଯ୍ୟନ୍ତ ଏବଂ ବାଗଦାଦରୁ ପାରସ୍ୟୋପସାଗରର ; ବାସ୍ରା ପର୍ଯ୍ୟନ୍ତ ଲମ୍ବିଥିବାର କଳ୍ପନା ହେଲା । ଏହାଦ୍ୱାରା ଜର୍ମାନୀର ଶିଳ୍ପଜାତ ସମଗ୍ର ପ୍ରାଚ୍ୟ ଖଣ୍ଡରେ ଭର୍ତ୍ତି ହୋଇ ଭାରତ ଉପରେ ପ୍ରଭାବ ପକାଇଥାନ୍ତା । ସେଥିରେ ଇଂଲଣ୍ଡ ଓ ଫ୍ରାନ୍ସ ଭୀତତ୍ରସ୍ତ ହୋଇ ପ୍ରଥମ ପୃଥିବୀ ମହାସମରରେ ଯୋଗ ଦେବାକୁ ବାଧ୍ୟ ହେଲେ ଏବଂ ଜର୍ମାନୀକୁ ଧ୍ୱଂସ କରିବା ପାଇଁ ପ୍ରାଣପାତ ଚେଷ୍ଟା କଲେ । କାଇଜରଙ୍କୁ ନିଜ ସିଂହାସନ ଛାଡ଼ିବାକୁ ହେଲା; କେବଳ ସେତିକି ନୁହେଁ, ଜର୍ମାନୀରେ ଗଣତନ୍ତ୍ର ପ୍ରତିଷ୍ଠା ହୋଇ ଦ୍ୱିତୀୟ ପୃଥିବୀ ମହାସମରର କାରଣରେ ପରିଣତ ହେଲା ।

ସ୍କୁଲରେ କହିବାକୁ ହେଲେ, ପୃଥିବୀର ଓ ଦେଶମାନଙ୍କର ସାମାଜିକ, ରାଜନୈତିକ ଓ ଆର୍ଥନୈତିକ ଇତିହାସ ଏପରି ଭାବରେ ପରସ୍ପର ସଙ୍ଗେ ସଂଶ୍ଳିଷ୍ଟ ଯେ ଆମ୍ଭେମାନେ ତହିଁରୁ କୌଣସି ଗୋଟିଏ ବିଭାଗକୁ ଉପେକ୍ଷା କିଂବା ପୃଥକୀକୃତ କରି ପାରିବା ନାହିଁ ।

ପୃଥିବୀର ଇତିହାସ, ଜାତିର ଇତିହାସ ଓ ଅଞ୍ଚଳର ଇତିହାସ ଛାତ୍ର ପକ୍ଷରେ ଆବଶ୍ୟକ ଜ୍ଞାତବ୍ୟ ହୋଇଥିବାରୁ, ବିଦ୍ୟାଳୟର କାର୍ଯ୍ୟକାଳ ନିର୍ଦ୍ଦିଷ୍ଟ ବା ସୀମାବଦ୍ଧ ରହିଥିବାରୁ ଏବଂ ବାଳକମାନଙ୍କର ବୟସ ଓ ମାନସିକ ବିକାଶ ଦୃଷ୍ଟିରେ ବିଷୟ-ବସ୍ତୁକୁ ଉପଯୋଗୀ କରିବାକୁ ହେଉଥିବାରୁ, ପାଠ୍ୟ ଓ ପାଠ୍ୟ-ପୁସ୍ତକ ନିର୍ଦ୍ଧାରଣ ଶିକ୍ଷକମାନଙ୍କ ପକ୍ଷରେ ଏକ ଗୁରୁ ଦାୟିତ୍ୱ ଓ କଠିନ କାର୍ଯ୍ୟ ହୋଇପଡ଼େ । ପୁଣି ଅଧିକାଂଶ ଛାତ୍ର ପ୍ରବେଶିକା ପରୀକ୍ଷା ପରେ କଲେଜରେ ପ୍ରବେଶ କରୁ ନ ଥିବାରୁ ପୂର୍ଣ୍ଣାଙ୍ଗ ବା ସମଧିକ ଫଳପ୍ରଦ ଆକାରରେ ବିଦ୍ୟାଳୟରେ ଇତିହାସ ଶିକ୍ଷା ଦେବା ଆହୁରି ଆବଶ୍ୟକ ହୁଏ । ପ୍ରବେଶିକା ପରୀକ୍ଷା ପୂର୍ବରୁ ଏହି ଛାତ୍ରମାନଙ୍କ ଇତିହାସରେ ଗୋଟିଏ ପୂର୍ଣ୍ଣ ପରିଷ୍କାର ଜ୍ଞାନ ହେବା ବାଞ୍ଛନୀୟ ।

ଏହି ଦୃଷ୍ଟିରୁ ବିଷୟବସ୍ତୁକୁ ଏପରି ସଂକ୍ଷିପ୍ତ ଆକାରରେ ଆହରଣ କରିବାକୁ ହେବ, ଯେପରି ତାହା ସଭ୍ୟତା ଓ ସଂସ୍କୃତିର ଏକ ପୂର୍ଣ୍ଣାଙ୍ଗ ଛବି ଛାତ୍ରମାନଙ୍କ ମନରେ ଉଦ୍ଭାସିତ କରାଇପାରିବ ଏବଂ ପାଠ୍ୟପୁସ୍ତକମାନ ଓ ଶିକ୍ଷକଙ୍କ ଶିକ୍ଷାଦାନ ଏପରି ସରଳ ଆକାରରେ ପ୍ରଣୟନ କରିବାକୁ ହେବ, ଯେପରି ବିଷୟବସ୍ତୁ ଛାତ୍ରମାନଙ୍କର ବୁଦ୍ଧିର ଉପଯୋଗୀ ଏବଂ ସୁଖବୋଧ ହେବ ।

ସିଭିକ୍ସ ବା ପୌରନୀତି ନିଜ ଦେଶର ଇତିହାସ ଶିକ୍ଷାର ଏକ ଅଙ୍ଗ । ଆଧୁନିକ ଗ୍ରାମ, ନଗର, ଜିଲ୍ଲା, ରାଜ୍ୟ ଓ ରାଷ୍ଟ୍ରର ଶାସନ ସମ୍ବନ୍ଧ ନ ଜାଣିଲେ, ଦେଶର ଇତିହାସ ଜ୍ଞାନ ଅପୂର୍ଣ୍ଣାଙ୍ଗ ରହେ ।

ବିଦ୍ୟାଳୟ ଶିକ୍ଷାର ଏକ ସାମୂହିକ ଆଦର୍ଶ ପାଠ୍ୟକ୍ରମ ପ୍ରସ୍ତୁତ କରିବା ନିମନ୍ତେ ଶିଶୁ ଶ୍ରେଣୀରୁ ପ୍ରବେଶିକା ପର୍ଯ୍ୟନ୍ତ ଛାତ୍ର-ମାନଙ୍କ ଆଗ୍ରହ ଓ ମନୋବୃତ୍ତିର ବିକାଶ ଦୃଷ୍ଟିରେ ତିନି ଭାଗରେ ବିଭକ୍ତ କରାଯିବ । ଏଗାର-ବାର ବର୍ଷରୁ ନ୍ୟୂନ ବୟସ୍କ ବା ପ୍ରାଥମିକ ବିଦ୍ୟାଳୟର ଛାତ୍ରମାନଙ୍କୁ ପ୍ରଥମ ବିଭାଗରେ ଗଣନା କରାଯିବ । ସେମାନଙ୍କ ଆଗ୍ରହ ଓ କଳ୍ପନାର ରଞ୍ଜନ ନିମନ୍ତେ ଐତିହାସିକ ବିଷୟବସ୍ତୁକୁ ଧାରାବାହିକ କ୍ରମରେ ଗଳ୍ପାକାରରେ ସଜାଇବାକୁ ହେବ । ବାରବର୍ଷରୁ ଊର୍ଦ୍ଧ୍ୱ ବୟସ୍କ ଅର୍ଥାତ୍ ମଧ୍ୟଶ୍ରେଣୀର (ଷଷ୍ଠରୁ-ଅଷ୍ଟମ ଶ୍ରେଣୀ ପର୍ଯ୍ୟନ୍ତ) ଛାତ୍ରମାନେ ପାରିପାର୍ଶ୍ୱିକ ସମାଜର କଥା ଜାଣିବାକୁ ଆଗ୍ରହୀ ହୁଅନ୍ତି । ଏହି ଶ୍ରେଣୀମାନଙ୍କର ପାଠ୍ୟ ବିଷୟକୁ ସାମାଜିକ ଦୃଷ୍ଟିକୋଣରୁ ସଜାଇବାକୁ ହେବ । ପନ୍ଦର ବର୍ଷରୁ ଊର୍ଦ୍ଧ୍ୱ ଅର୍ଥାତ୍ ଉଚ୍ଚ ବିଦ୍ୟାଳୟର ଉପର ତିନି ଶ୍ରେଣୀର ଛାତ୍ର-ମାନଙ୍କର ମନୋବୃତ୍ତିର ବିକାଶ ଏବଂ ଜ୍ଞାନ ଓ ଆଗ୍ରହର ପରିସର-ବୃଦ୍ଧି ଦୃଷ୍ଟିରେ ସେମାନଙ୍କୁ ଦେଶବିଦେଶର ବିବରଣ ତଥା ନିଜ ଦେଶ ସଙ୍ଗେ ଦେଶବିଦେଶର ସମ୍ପର୍କ ଶିକ୍ଷା ଦେବାକୁ ହେବ । ଏହି ଶ୍ରେଣୀମାନଙ୍କରେ ମାନବଜାତିର ସଭ୍ୟତା ଓ ସଂସ୍କୃତିର ସଂକ୍ଷିପ୍ତ ବିବରଣ, ପୃଥିବୀର ଜାତି ଜାତି ମଧ୍ୟରେ ଆପେକ୍ଷିକ ସମ୍ପର୍କ ଏବଂ

ମାନବ ଜାତିର ସାଧାରଣ ଇତିହାସ ସଙ୍ଗେ ସମ୍ବନ୍ଧ ରଖି ନିଜ ଦେଶର ବିଶଦ ଇତିବୃତ୍ତ ଶିକ୍ଷା ଦିଆଯିବ ।

ଅଳ୍ପ କଥାରେ, ପ୍ରାଥମିକ ବିଦ୍ୟାଳୟରେ ପାଠ୍ୟ ଗଳ୍ପ-କାରରେ ନିବଦ୍ଧ ହେବ । ଦ୍ୱିତୀୟ ଓ ତୃତୀୟ ଶ୍ରେଣୀରେ ସ୍ୱଦେଶର ରାଜା, ବୀର, ନେତା, ସାଧୁ, ସଂସ୍କାରକ, ବୈଜ୍ଞାନିକ, ମହାତ୍ମା, କବି ଆଦିଙ୍କର କାହାଣୀ ବା ଜୀବନୀ ଓ କୃତିତ୍ୱ ସରଳ ଓ ମନୋରମ ଆକାରରେ ଶିକ୍ଷା ଦିଆଯିବ । ଚତୁର୍ଥ ଓ ପଞ୍ଚମ ଶ୍ରେଣୀରେ ଅପେକ୍ଷାକୃତ ବିଶଦ ଆକାରରେ ଓ ଐତିହାସିକ ପ୍ରଣାଳୀରେ କେତେକ ପ୍ରମୁଖ ଘଟଣାର କାଳକ୍ରମ ଅନୁସାରେ ସକାଳ ପୂର୍ବଜ୍ଞାନ ଓ ପଠିତ ବିଷୟକୁ ଆଉ ଥରେ ଶିକ୍ଷା ଦିଆଯିବ । ଏହି ବିଭାଗରେ ସ୍ୱଦେଶର ତଥା ବିଦେଶର ଇତିବୃତ୍ତ ଗଳ୍ପାକାରରେ ଶିକ୍ଷା ଦିଆଯିବ । ଭାରତକୁ ଟେଲିଗ୍ରାମ, ଟେଲିଫୋନ୍, ରେଡିଓ, ରେଳ, ଜାହାଜ ଉଡ଼ାଜାହାଜ ପ୍ରଭୃତି କପରି ଆସିଲ । ସେସବୁର ଆବିଷ୍କର୍ତ୍ତାମାନଙ୍କ ଜୀବନୀ ଓ କାର୍ଯ୍ୟ ସହଜ ଆକାରରେ ଶିକ୍ଷା ଦିଆଯିବ ।

ମଧ୍ୟ ବିଦ୍ୟାଳୟରେ ଧାରାବାହିକ ଇତିହାସ ଶିକ୍ଷା ଦିଆଯିବ । ଷଷ୍ଠରୁ ଅଷ୍ଟମ ଶ୍ରେଣୀମାନଙ୍କରେ ନିଜ ଦେଶର ସଭ୍ୟତା ଓ ସଂସ୍କୃତିର ଧାରାବାହିକ ଇତିହାସ, ରାଜନୈତିକ, ସାମାଜିକ ଓ ଅର୍ଥନୈତିକ ବିଭାଗରେ ସରଳ ବିବରଣୀ ଘଟଣାର କାଳକ୍ରମରେ ଶିକ୍ଷା ଦିଆଯିବ । ନିଜ ଦେଶ ସଙ୍ଗେ ସମ୍ପର୍କ ରଖି ପୃଥିବୀର ଅଗ୍ରଗତିର ସାଧାରଣ ବିବରଣ (ଶିଳ୍ପ, ବାଣିଜ୍ୟ, ବୈଜ୍ଞାନିକ ଉନ୍ନତି ପ୍ରଭୃତି) ଶିକ୍ଷା ଦିଆଯିବ ।

ଉକ୍ତ ବିଦ୍ୟାଳୟରେ ଅର୍ଥାତ୍ ନବମରୁ ଏକାଦଶ ଶ୍ରେଣୀମାନଙ୍କରେ ପୃଥିବୀର ଇତିହାସ ସଙ୍ଗେ ଘନିଷ୍ଠ ସମ୍ପର୍କ ରଖି ସ୍ୱଦେଶର ବା ଭାରତର ଇତିହାସ ଶିକ୍ଷା ଦିଆଯିବ ।

ଇତିହାସର ଅର୍ଥ ନିଜ ଦେଶ୍ମିରାଷ୍ଟ୍ରର ବୃତ୍ତାନ୍ତର ଅନୁଶୀଳନ ଓ ଅଧ୍ୟୟନ । କିନ୍ତୁ ଭାରତର ଇତିହାସ ପୃଥିବୀର ଇତିହାସରୁ ବିଚ୍ଛିନ୍ନ ନୁହେଁ । ଆଧୁନିକ ବିଜ୍ଞାନର ଆବିଷ୍କାର ଓ ଅଗ୍ରଗତି ଫଳରେ ସମୟ ଓ ସ୍ଥାନର ଦୂରତା ଏତେ କମିଯାଇଛି ଯେ ସମଗ୍ର ପୃଥିବୀ ଏବେ ମାନବର ଦେଶ୍ମିରେ ପରିଣତ ହୋଇଅଛି । ଆମେରିକା, ଇଂଲଣ୍ଡ, ରୁଷିଆର ବାଣିଜ୍ୟ ପ୍ରତିଷ୍ଠାନମାନେ ଭାରତରେ ଶିଳ୍ପର ପ୍ରସାର କରୁଛନ୍ତି । କାଶ୍ମୀର ନେଇ ବୈଦେଶିକ ଶକ୍ତିମାନେ ତଥା ବିଶ୍ୱଜାତିସଙ୍ଘ ଭାରତର ରାଜନୀତିରେ ହସ୍ତକ୍ଷେପ କରୁଛନ୍ତି । କୋରିଆ ଓ ସୁଏଜ ପ୍ରଶ୍ନ ନେଇ ଭାରତ ଘନିଷ୍ଠ ଭାବରେ ପୃଥିବୀର ବିଭିନ୍ନ ଜାତି ସଙ୍ଗେ ହାତକୁ ହାତ ମିଳାଇ ଚାଲୁଛି । ପୃଥିବୀରୁ ଯୁଦ୍ଧ ଉଚ୍ଛେଦ କରିବା ନିମନ୍ତେ ଭାରତ ସରକାର ପ୍ରାଣପାତ ପରିଶ୍ରମ କରୁଅଛନ୍ତି । ଏପରି କି ଆମେ ଯେଉଁ ଖାଦ୍ୟ ଖାଉଛୁଁ, ପୃଥିବୀର ପ୍ରତ୍ୟେକ ଅଞ୍ଚଳରୁ ଆସୁଅଛି । ଆମର ଗହମ କାନାଡ଼ା ଓ ଅଷ୍ଟ୍ରେଲିଆରୁ, ଚାଉଳ ବ୍ରହ୍ମଦେଶରୁ, ଖଜୁରି ଆରବ ଓ ଆଫ୍ରିକାରୁ ଆସୁଛି । ଲୌହଜାତ ଆମେରିକା ଓ ଇଂଲଣ୍ଡରୁ ଆସୁଛି । ଆମକୁ ଏବେ ସମଗ୍ର ପୃଥିବୀର ଘଟଣା ଓ ଅଗ୍ରଗତି ଜାଣିବାକୁ ଓ ଆଲୋଚନା କରିବାକୁ ହେବ । ଜାତି ଜାତି ମଧ୍ୟରେ ସମ୍ପର୍କ ଓ ସାହଚର୍ଯ୍ୟ ସ୍ଥାପନ କରିବାକୁ ହେବ । ଆମର ସମାଜ, ସଂସ୍କୃତି, ସଭ୍ୟତା, ରାଜନୀତି, ଅର୍ଥନୀତି, ପ୍ରଭୃତି ସମସ୍ତ ପୃଥିବୀର ଇତିହାସ ସଙ୍ଗେ ଘନିଷ୍ଠ

ଭାବରେ ବିକଶିତ ହୋଇଅଛି । ଲଣ୍ଡନ ସହରରେ ହେଉଥିବା ସଙ୍ଗୀତ ଆମେମାନେ ଘର ଭିତରେ ବସି ଶୁଣି ପାରୁଅଛୁଁ । ଜାତୀୟ ଉନ୍ନତି ସାଧନ କରିବାକୁ ହେଲେ, ପୃଥିବୀର ସମସ୍ତ ଜାତିର ଅଗ୍ରଗତି ପ୍ରତି ଆମକୁ ଦୃଷ୍ଟି ଦେବାକୁ ପଡ଼ିବ । ପୃଥିବୀର ସମସ୍ତ ଦେଶରେ ରାଜତନ୍ତ୍ରର ଉଚ୍ଛେଦ ଓ ଗଣତନ୍ତ୍ରର ପ୍ରତିଷ୍ଠା ହୋଇଅଛି । ସମଗ୍ର ପୃଥିବୀ ଏବେ ଗୋଟିଏ ସାଧାରଣ ଗଣତନ୍ତ୍ରର (ବିଶ୍ୱଜାତି-ସଙ୍ଘର) ଶାସନାଧୀନ ହେବାକୁ ଯାଉଅଛି । ଏପରି ଅବସ୍ଥାରେ ପୃଥିବୀର ଇତିହାସ ପ୍ରତ୍ୟେକ ନାଗରିକଙ୍କୁ ଜାଣିବାକୁ ହେବ ।

ଆବହମାନ କାଳରୁ ଦେଖିଲେ, ଭାରତର ଇତିହାସ ପୃଥିବୀର ଇତିହାସରୁ ବିଚ୍ଛିନ୍ନ ନୁହେଁ । ଦ୍ରାବିଡ଼ ଓ ଆର୍ଯ୍ୟମାନେ ଯଥାକ୍ରମେ ସୁମେରିଆ ଓ ମଧ୍ୟଏସିଆରୁ ଭାରତକୁ ଆସିଥିଲେ । ବାଣିଜ୍ୟ, ବ୍ୟବସାୟ, ସାହିତ୍ୟ, ବିଜ୍ଞାନ, ଶିଳ୍ପ ସ୍ଥାପତ୍ୟ, ଧର୍ମ ସବୁ ବିଷୟରେ ପୃଥିବୀର ବିଭିନ୍ନ ଦେଶ ସଙ୍ଗେ ଭାରତର ସମ୍ପର୍କ ରହିଅଛି । ଭାରତର ନାନା ଆକ୍ରମଣକାରୀ ଭାରତର ଇତିହାସକୁ ନାନା ଭାବରେ ପ୍ରଭାବିତ କରିଛନ୍ତି ଏବଂ ଭାରତରେ ରାଜତ୍ୱ ମଧ୍ୟ ପ୍ରତିଷ୍ଠା କରିଛନ୍ତି । ଭାରତର ଇତିହାସ ସମ୍ବନ୍ଧରେ ପ୍ରକୃତ ଧାରଣା କରିବାକୁ ହେଲେ, ଭାରତ ଇତିହାସର ପ୍ରତ୍ୟେକ ବିଷୟକୁ ଠିକ ରୂପେ ବୁଝିବାକୁ ହେଲେ, ପୃଥିବୀ ଇତିହାସ ସଙ୍ଗେ ସମ୍ପର୍କ ରଖି ତାହାର ଆଲୋଚନା କରିବାକୁ ହେବ ।

ଭାରତର କୋଲ ଜାତି ସମ୍ବନ୍ଧରେ ଶିକ୍ଷା ଦେବା ବେଳେ ଅଷ୍ଟ୍ରେଲିଆର ଆଦିମ ଅଧିବାସୀ, ଆଫ୍ରିକାର ନିଗ୍ରୋ ଜାତି ଓ ପୃଥିବୀର ବିଭିନ୍ନ ଅଞ୍ଚଳର ମାନବ ଜାତି ସଙ୍ଗେ ସମ୍ପର୍କ ଶିକ୍ଷା

ଦେବାକୁ ହେବ । ହରପ୍ପା-ମହେଞ୍ଜୋଦାରୋର ସଭ୍ୟତା ଶିକ୍ଷା ଦେବା ବେଳେ ସୁମେରିଆ, ମିଶର, ବେବିଲନ, ଚୀନ, ଗ୍ରୀସ ଓ ରୋମର ତତ୍କାଳୀନ ସଭ୍ୟତାର ଆଲୋଚନା କରିବାକୁ ହେବ । ଆର୍ଯ୍ୟ ଜାତିର କଥା ଶିକ୍ଷା ଦେବା ବେଳେ ମେରୁ ଅଞ୍ଚଳର ମାନବ, ମଧ୍ୟ ଏସିଆର ଆର୍ଯ୍ୟ ଜାତି ଓ ପାରସ୍ୟର ଆର୍ଯ୍ୟଜାତି କଥା ଆଲୋଚନା କରିବାକୁ ହେବ । ବୌଦ୍ଧଧର୍ମର ଆଲୋଚନା ବେଳେ ପୃଥିବୀର ବିଭିନ୍ନ ଅଞ୍ଚଳରେ ଧର୍ମ ଆନ୍ଦୋଳନ ତଥା ଜନଜୀବନ ଉପରେ ବୌଦ୍ଧଧର୍ମର ପ୍ରଭାବ କଥା ମଧ୍ୟ ଆଲୋଚନା କରିବାକୁ ହେବ । ଆଲେକଜାଣ୍ଡାରଙ୍କ ଭାରତ ଆକ୍ରମଣ କଥା ସଙ୍ଗେ ଚନ୍ଦ୍ରଗୁପ୍ତଙ୍କ ସାମ୍ରାଜ୍ୟର ଉନ୍ନତି, ସିଲ୍ୟୁକସଙ୍କ ରାଜଦୂତ ଏବଂ ଶିଳ୍ପବାଣିଜ୍ୟ, ଗଣିତଜ୍ୟୋତିଷ, ବିଜ୍ଞାନ ପ୍ରଭୃତି ଯୋଗେ ଭାରତ ଓ ପାଶ୍ଚାତ୍ୟ ଦେଶ ସମୂହ ମଧ୍ୟରେ ସମ୍ପର୍କ କଥା ମଧ୍ୟ ଆଲୋଚନା କରିବାକୁ ହେବ ।

ସେହିପରି ଶକ ଓ ହୂନ ଜାତିର ଭାରତ ଆକ୍ରମଣ, ସୁଲତାନ ମାମୁଦ, ଗଜନୀର ମହମ୍ମଦ, ତାପରେ ଆଦିଙ୍କ ଭାରତ ଆକ୍ରମଣ ପ୍ରସଙ୍ଗରେ ସମ୍ପୃକ୍ତ ଦେଶମାନଙ୍କର ଓ ଆକ୍ରମଣକାରୀ-ମାନଙ୍କର ସାମଗ୍ରିକ ଆଲୋଚନା କରିବାକୁ ହେବ । ୟୁରୋପୀୟ-ମାନେ ତାଙ୍କର ବାଣିଜ୍ୟ ବ୍ୟପଦେଶରେ ଭାରତକୁ ଆସିଲେ, ଜାଣିବା ସଙ୍ଗେ ସଙ୍ଗେ ତତ୍କାଳୀନ ପୃଥିବୀର ପରିସ୍ଥିତି ଓ ଇତିହାସ ଆଲୋଚନା କରିବାକୁ ହେବ । ଇଂରାଜ ସରକାର ଭାରତକୁ ତାଙ୍କ ସ୍ୱାଧୀନତା ଦେଲେ, ସେହି କାରଣ ନିର୍ଣ୍ଣୟ କରିବା

ନିମନ୍ତେ ପୃଥିବୀର ଆନ୍ତର୍ଜାତିକ ପରିସ୍ଥିତି, ରାଜନୈତିକ ଅବସ୍ଥା ଓ ଆଧୁନିକ ପ୍ରଗତି ଆଲୋଚନା କରିବାକୁ ହେବ ।

ଅଳ୍ପ କଥାରେ, ପୃଥିବୀର ଇତିହାସରୁ ବିଚ୍ଛିନ୍ନ ଆକାରରେ ଭାରତର ଇତିହାସ ଶିକ୍ଷା ଦିଆ ଯାଇ ନ ପାରେ । ସେପ୍ରକାରେ ଶିକ୍ଷା ଦେଲେ, ଛାତ୍ରମାନେ ପ୍ରକୃତ ଦୃଷ୍ଟିକୋଣରୁ ଐତିହାସିକ ଘଟନାବଳୀର ପରିଣତି ହୃଦୟଙ୍ଗମ କରି ପାରିବେ ନାହିଁ ଏବଂ ଭାରତର ଇତିହାସ ସେମାନଙ୍କ ପକ୍ଷରେ ଦୁର୍ବୋଧ ରହିବ ।

ଇତିହାସ ପାଠ ଛାତ୍ରର ପ୍ରାଣରେ ଦେଶପ୍ରେମ ଓ ନାଗରିକତାବୋଧ ଜାତ କରାଇବା ଉଚିତ । ଭାରତୀୟ ଜାତୀୟ ନେତାମାନଙ୍କର କାର୍ଯ୍ୟ, ସ୍ୱାଧୀନତା ଆନ୍ଦୋଳନର ଚରିତ୍ରକର୍ଷକ ବିବରଣ ଛାତ୍ରମାନଙ୍କୁ ଦିଆଯିବା ଆବଶ୍ୟକ । ଗଜନୀର ମାମୁଦଙ୍କୁ ଭାରତରୁ ହଟାଇଦେବା ନିମନ୍ତେ ଆନନ୍ଦପାଳ ଯେଉଁ ସମବାୟ ଗଠନ କରିଥିଲେ, ଇଂରେଜରାଜ୍ୟର ଉଚ୍ଛେଦ ନିମନ୍ତେ ହାଇଦର ଆଲି ଓ ଟିପୁ ଯେପରି ସମବାୟ ଗଠନ ଓ ପ୍ରାଣପାତ ଉଦ୍ୟମ କରିଥିଲେ, ତାହାର ଏବଂ ଏପ୍ରକାର ଅନ୍ୟାନ୍ୟ ଉଦ୍ୟମ ଓ ବୃତ୍ତାନ୍ତ ସମୂହର ଜୀବନ୍ତ ଚିତ୍ର ଛାତ୍ରମାନଙ୍କ ହୃଦୟରେ ଅଙ୍କିତ ହେବା ଉଚିତ ।

**ପ୍ରାଥମିକ ବିଦ୍ୟାଳୟ (ପ୍ରାଇମେରି ସ୍କୁଲ)**—ପ୍ରାଥମିକ ବିଦ୍ୟାଳୟର ତଳ ଦୁଇ ଶ୍ରେଣୀରେ ପର୍ଯ୍ୟବେକ୍ଷଣ, କଥୋପକଥନ ଓ ଗଳ୍ପକଥନ ଆକାରରେ ଇତିହାସଶିକ୍ଷାର ମୂଳଭିତ୍ତି ଦିଆଯିବ । କଥା, କାହାଣୀ ଓ ଗଳ୍ପରେ ଶିଶୁ ବିଶେଷ ଆମୋଦ ଲାଭ କରେ ।

ଗଳ୍ପ ଶୁଣିବା ବେଳେ ତାହାର ଚକ୍ଷୁ ଓ ମନ ବିସ୍ତାରିତ ହୋଇଥାଏ। ଗ୍ରାମୋଫୋନ, ଚଳଚିତ୍ର, ନାଟକ ପ୍ରଭୃତିରୁ ଶିଶୁମାନେ ବିଶେଷ ଆନନ୍ଦ ଓ ଶିକ୍ଷା ପାଇଥାନ୍ତି। ଏପ୍ରକାର ନାନା ଭିତ୍ତି ଉପରେ ଶିଶୁମାନଙ୍କୁ ବହୁ କଥା ଶିକ୍ଷା ଦିଆ ଯାଇପାରିବ।

ଶିଶୁର ଏପ୍ରକାର ଶିକ୍ଷା କେବଳ ମୌଖିକ କାର୍ଯ୍ୟ ହେବ। ସେ ଯାହା ଦେଖିଥିବ, ସେହି ବିଷୟ କେବଳ ତାକୁ ଶିକ୍ଷା ଦିଆଯିବ। ଶିକ୍ଷକ କ୍ଷୁଦ୍ର ଗଳ୍ପମାନ ଗଠନ କରି ଶିଶୁକୁ ଶିକ୍ଷା ଦେବେ ଏବଂ ଶିଶୁ ତାହା ଆବୃତ୍ତି କରିବାକୁ ଚେଷ୍ଟା କରିବ। ଏଥିରେ ଶିଶୁର ଧାରାବାହିକ ଆବୃତ୍ତି କରିବାର ଶକ୍ତି, ଭାବପ୍ରକାଶ ଓ ରଚନାର ମୂଳଭିତ୍ତି ସ୍ଥାପିତ ହେବ। ଶିଶୁ ହାତରେ କୌଣସି ପୁସ୍ତକ ଦିଆଯିବ ନାହିଁ। ଶିକ୍ଷକ ନିଜ ପକାଶେ ଗୋଟିଏ ଖସଡ଼ା ବା ସ୍କିମ ପ୍ରସ୍ତୁତ କରିବେ ଏବଂ ସେହି ସ୍କିମକୁ କାର୍ଯ୍ୟରେ ପରିଣତ କରିବା ନିମନ୍ତେ କେତେକ ପରାମର୍ଶ ପୁସ୍ତକ (Reference Books)ର ସାହାଯ୍ୟ ନେବେ।

ଏହି ଦୁଇ ଶ୍ରେଣୀ ପକାଶେ ଏଠାରେ ଏକ ଆଦର୍ଶ ଖସଡ଼ାର ସୂଚନା ଦିଆ ଯାଉଅଛି :—

(କ) ସ୍ଥାନୀୟ ଇତିହାସ (ପର୍ଯ୍ୟବେକ୍ଷଣଦ୍ୱାରା)—

ଗ୍ରାମ, ନଗର, ଦେଉଳ, ଦୁର୍ଗ, ଖାଇ ପ୍ରଭୃତି : ରାଜା ଓ ଜାତୀୟ ବୀର, ନିର୍ମାତା ଓ ପ୍ରତିଷ୍ଠାତାଙ୍କ କାହାଣୀ ଓ କାର୍ଯ୍ୟ।

ବିଦ୍ୟାଳୟ, ପାଠଶାଳା, ଚୌପାଢ଼ି, କଲେଜ ପ୍ରଭୃତି : ପ୍ରତିଷ୍ଠାତା ଓ ଜାତୀୟ ବୀରମାନଙ୍କ, ନେତାମାନଙ୍କ କାହାଣୀ ଓ କାର୍ଯ୍ୟ।

ରାସ୍ତା, ବନ୍ଧ, ପୋଲ, ପୋଖରୀ, ନାଳ ପ୍ରଭୃତି ସମ୍ପୃକ୍ତ ଐତିହାସିକ କାହାଣୀ ।

ସ୍ଥାନୀୟ କିମ୍ବଦନ୍ତୀ, କାହାଣୀ ଓ ସମ୍ପୃକ୍ତ ସ୍ଥାନ ବା ଦୃଶ୍ୟ ନେଇ ଗଳ୍ପକଥନ ।

(ଖ) ଜାତୀୟ ଇତିହାସ (ନାଟ, ସୁଆଙ୍ଗ, ନାଟକ, ଚଳଚିତ୍ର ପ୍ରଭୃତି ଦର୍ଶନ ଦ୍ୱାରା)—

ରାମାୟଣ—ରାମଚନ୍ଦ୍ର ସୀତାବିବାହ, ସୀତାଚୋରି, ସେତୁବନ୍ଧ, ରାବଣବଧ, ସୀତାବନବାସ ।

ମହାଭାରତ—କୌରବ ପାଣ୍ଡବଙ୍କ ଆଖଡ଼ାଘର, ଦ୍ରୌପଦୀ ସ୍ୱୟମ୍ବର, ପଶାଖେଳ, ମହାଭାରତ ଯୁଦ୍ଧ ।

ହରିଶ୍ଚନ୍ଦ୍ର, କର୍ଣ୍ଣ, ଧ୍ରୁବ, ସାବିତ୍ରୀ, ଶ୍ରୀକୃଷ୍ଣ ଆଦିଙ୍କ କାହାଣୀ ।

ଭାରତଇତିହାସ ସମ୍ପୃକ୍ତ ସ୍ଥାନୀୟ କାହାଣୀ ।

(ଗ) ପୃଥିବୀ ଇତିହାସ (ପ୍ରତ୍ୟକ୍ଷ ଦର୍ଶନ ବା ଉପଭୋଗ ଦ୍ୱାରା)—

ରେଳଗାଡ଼ି—ଜେମସୱାଟ ଓ ଷ୍ଟିଫେନସନ କାହାଣୀ, ଉଡ଼ାଜାହାଜ—ରାଇଟ୍ ଭ୍ରାତାଦ୍ୱୟ ।

ଚଳଚିତ୍ର—ଏଡିସନ । ଫନୋଗ୍ରାଫ୍—ରେଡିଓ ମାର୍କନି ।

ବୁଦ୍ଧ, ଅଶୋକ ଓ ମହାତ୍ମା ଗାନ୍ଧି ।

(ଘ) ଶରୀରର ପରିଚ୍ଛନ୍ନତା (ସିଭିକ୍ସ)—ନଖ, କେଶ, ଦାନ୍ତ, ଚର୍ମ, ଲୁଗାପଟା, ଖାଦ୍ୟପାନୀୟ, ବାସନ, ବାସଗୃହ ଓ ସ୍ନାନବ୍ୟାୟାମ ।

ପ୍ରକୃତ ଇତିହାସର ବିଷୟବସ୍ତୁର ଶିକ୍ଷା ପ୍ରାଥମିକ ବିଦ୍ୟାଳୟର ଦ୍ୱିତୀୟ ଓ ତୃତୀୟ ଶ୍ରେଣୀରୁ ଆରମ୍ଭ ହେବ । ଅତି ସରଳ ଭାଷାରେ ଲିଖିତ ଖଣ୍ଡିଏ ଗ୍ରନ୍ଥ ଗଳ୍ପ ପୁସ୍ତକ ଛାତ୍ରମାନଙ୍କ ହାତରେ ଦିଆଯିବ । ଛାତ୍ରମାନେ ଏହି ପୁସ୍ତକରୁ ପଢ଼ି ଗଳ୍ପମାନ ଶିଖିବେ ନାହିଁ । ଦୀର୍ଘକାଳରେ ଗଳ୍ପ ଭୁଲି ଯିବାର ହେଲେ, ଆବୃତ୍ତି ନିମନ୍ତେ କେବଳ ପୁସ୍ତକଟି ପଢ଼ିବେ ।

ପୃଥିବୀର ଇତିହାସ, ବିଶ୍ବର ଇତିହାସ ଓ ରାଜ୍ୟ ବା ଆଞ୍ଚଳିକ ଇତିହାସରୁ ସହଜ ଓ ସରଳ ସଂକ୍ଷିପ୍ତ କଥାମାନ ଏହି ଦୁଇ ଶ୍ରେଣୀର ପାଠ୍ୟବସ୍ତୁ ହେବ । ଗଳ୍ପ ପୁସ୍ତକରେ କଥାମାନ ସରଳ ଭାଷାରେ ସଂକ୍ଷେପରେ ସହଜ ଆକାରରେ ଲିଖିତ ହୋଇ-ଥିବ ।

ପାଠ୍ୟବସ୍ତୁର ଏକ ତାଲିକା ନିମ୍ନରେ ପ୍ରଦତ୍ତ ହେଲ :—

(୧) ରାଜ୍ୟର, ବିଶ୍ବର ଓ ବିଶ୍ବର ଆଦିମ ଅଧିବାସୀ ଓ ନାଆଁର ଆବିଷ୍କାର ଓ ବ୍ୟବହାର ।
(୨) ମିଶରର ପିରାମିଡ୍ କାହାଣୀ ।
(୩) ଭାରତର ଆର୍ଯ୍ୟଜାତି, ସୁଦାସ, ବଶିଷ୍ଠ ଓ ବିଶ୍ବାମିତ୍ର ।
(୪) ରାମାୟଣ କଥା ଓ ରାବଣବଧ ।
(୫) ମହାଭାରତକଥା ଓ ମହାଯୁଦ୍ଧ ।
(୬) ବୁଦ୍ଧ ।
(୭) ଅଶୋକ ।
(୮) ଆଲେକଜାଣ୍ଡାର ।

(୯) ଯୀଶୁଖ୍ରୀଷ୍ଟ ।
(୧୦) ମହମ୍ମଦ ।
(୧୧) ଦ୍ୱିତୀୟ ଚନ୍ଦ୍ରଗୁପ୍ତ ଓ କାଳିଦାସ ।
(୧୨) ମହମ୍ମଦ ଘୋରୀ, ପୃଥ୍ୱୀରାଜ ଓ ସଂଯୁକ୍ତା ।
(୧୩) ଭୁବନେଶ୍ୱର ଦେଉଳ ଓ ଲଲାଟେନ୍ଦୁ କେଶରୀ; ପୁରୀ ଦେଉଳ ଓ ଅନଙ୍ଗଭୀମଦେବ; କୋଣାର୍କ ଦେଉଳ ଓ ନରସିଂହଦେବ ଓ ଧର୍ମପଦ । ପୁରୁଷୋତ୍ତମଦେବ ଓ ପଦ୍ମାବତୀ ।
(୧୪) ଆଲ୍ଲାଉଦ୍ଦିନ ଓ ପଦ୍ମିନୀ ।
(୧୫) ଆକବର, ଦୁର୍ଗାବତୀ, ଚାନ୍ଦବିବି, ରାଣାପ୍ରତାପ ।
(୧୬) ଶାହଜାହାନ ଓ ତାଜମହଲ ।
(୧୭) ଶିବାଜୀ ଓ ମହାରଷ୍ଟ୍ର ଜାତି ।
(୧୮) ଉପେନ୍ଦ୍ରଭଞ୍ଜ—ସାରଳାଦାସ—ବଳରାମଦାସ, ତୁଳସୀଦାସ ।
(୧୯) କଲମ୍ବସ ଓ ଭାସ୍କୋ ଡା ଗାମା ।
(୨୦) ଫୋର୍ଟ ଉଇଲିୟମ, ସିରାଜ ଓ କ୍ଲାଇଭ ।
(୨୧) ଜେମସଉଆଟ, ଷ୍ଟେଫେନସନ, ରେଲଗାଡ଼ି, ଓ ଷ୍ଟୀମର ।
(୨୨) ଡେଲହୌସୀ ଓ ଭାରତର ବୈଷୟିକ ଉନ୍ନତି ।
(୨୩) ସିପାହୀଯୁଦ୍ଧ ଓ ଝାନ୍‌ସିର ରାଣୀ, ଚଖିଖୁଣ୍ଟିଆ, ସୁରେନ୍ଦ୍ରସାୟୀ
(୨୪) ଦେଶବିଦେଶର ପିଲଙ୍କର କାହାଣୀ—ଚୀନ, ଜାପାନ । ମେରୁପ୍ରଦେଶର ଗଳ୍ପ । ଏସ୍କିମୋ, କିରଗିଜ ଓ ନିଗ୍ରୋ-ମାନଙ୍କର କାହାଣୀ । ଅଷ୍ଟ୍ରେଲିଆର ମେଷପାଳନ ।
(୨୫) ଉଡ଼ାଜାହାଜ ଓ ରାଇଟ କାହାଣୀ ।

(୨୬) ସିନେମା ଓ ଏଡିସନ, ଫନୋଗ୍ରାଫ—ରେଡିଓ ଓ ମାର୍କନି
(୨୭) ମହାତ୍ମା ଗାନ୍ଧି, ଗୋପବନ୍ଧୁ ଦାଶ, ସୁବାଷଚନ୍ଦ୍ର ।
(୨୮) ଫକୀରମୋହନ—ରାଧାନାଥ—ମଧୁସୂଦନ—ଗଙ୍ଗାଧର ।
(୨୯) ପରମାଣୁ ବୋମା—ଜାପାନର ନାଗାସକି ଓ ହୀରୋସିମା ।
(୩୦) ସମ୍ମିଳିତ ଜାତିସଂଘ ।
(ସିଭିକସ) :—
(୩୧) ଗ୍ରାମର ରାସ୍ତା, କୂପ, ଜଳାଶୟ, ପାନୀୟ ଜଳ, ଅଗ୍ନିଭୟ, ଗ୍ରାମର ପରିଷ୍କାରପରିଚ୍ଛନ୍ନତା, ସଂକ୍ରାମକ ରୋଗ, ଗ୍ରାମର ଶାସନ ଓ ପଞ୍ଚାୟତ; ଥାନାର ଶାସନ ଓ ଶାନ୍ତିରକ୍ଷା ।

ମଧ୍ୟ ବିଦ୍ୟାଳୟ (ମିଡିଲସ୍କୁଲ):—ମଧ୍ୟ ବିଦ୍ୟାଳୟର ଚତୁର୍ଥ ଓ ପଞ୍ଚମ ଶ୍ରେଣୀମାନଙ୍କରେ ରାଜ୍ୟର ପୂର୍ଣ୍ଣାଙ୍ଗ ବିବରଣୀ ଛାତ୍ରମାନଙ୍କୁ ଶିକ୍ଷା ଦିଆଯିବ । ସେହି ବିବରଣୀ ସଙ୍ଗେ ସମ୍ପର୍କ ରଖି ରାଷ୍ଟ୍ରର ଇତିହାସରୁ ଗଳ୍ପମାନ ଶିକ୍ଷା ଦିଆଯିବ । ପୃଥିବୀର ଇତିହାସରୁ, ରାଷ୍ଟ୍ରର ଇତିହାସରୁ ଏବଂ ରାଜ୍ୟର ଇତିହାସରୁ ସରଳ ଗଳ୍ପ ସମ୍ବଳିତ ଖଣ୍ଡିଏ ଐତିହାସିକ ସାହିତ୍ୟ ପୁସ୍ତକ ଛାତ୍ରମାନଙ୍କର ସାହିତ୍ୟ ଶ୍ରେଣୀରେ ଅତିରିକ୍ତ ପାଠ୍ୟ ରୂପେ ପଢ଼ାଯିବ । ଇତିହାସ ପାଠ୍ୟପୁସ୍ତକରେ ସରଳ ଆକାରରେ ପୌରନୀତିରୁ ମଧ୍ୟ କେତେକ ପାଠ ରହିବ ।

ଚତୁର୍ଥ ଓ ପଞ୍ଚମ ଶ୍ରେଣୀ

(୧) ଭାରତର ଓ ଓଡ଼ିଶାର ଆଦିମ ଅଧିବାସୀ
— କୋଲ୍ ଓ ଦ୍ରାବିଡ଼ ଜାତି ।
ସୈନ୍ଧବ ସଭ୍ୟତା—ମହେଞ୍ଜୋଦାଡ଼ୋ ଓ ହରପ୍ପା ।

ଆର୍ଯ୍ୟଜାତି—ସୁଦାସ ଓ ଦଶରାଜ ଯୁଦ୍ଧ ।
ରାମାୟଣ—ମହାଭାରତ ।

(୨) ଜୈନ ଓ ବୁଦ୍ଧ । ହେରୋଦୋତସ—ଆଲେକଜାଣ୍ଡାର – ପୁରୁ । ମଗଧ ଓ ପାଟଳିପୁତ୍ର – ମୌର୍ଯ୍ୟବଂଶ ଓ ଅଶୋକ । ଓଡ଼ିଶା—ଖାରବେଳ ।

(୩) କନିଷ୍କ—ଗୁପ୍ତବଂଶ—ସମୁଦ୍ରଗୁପ୍ତଙ୍କ ଦିଗ୍‌ବିଜୟ—ଦ୍ୱିତୀୟ ଚନ୍ଦ୍ରଗୁପ୍ତ ଓ ନବରତ୍ନ—ଫାହିଆନ । ହର୍ଷବର୍ଦ୍ଧନ—ହୁଏନ୍ ସାଂ—ଓଡ଼ିଶାର ଚୀନବିବରଣୀ । କୁମାରିଲ—ରାମାନୁଜ—ଶଙ୍କର—ବୌଦ୍ଧଧର୍ମର ପତନ ।

(୪) ଓଡ଼ିଶାର କେଶରୀବଂଶ—ଭୁବନେଶ୍ୱର ଦେଉଳ । ଗଙ୍ଗବଂଶ—ପୁରୀଦେଉଳ ଓ ଅନଙ୍ଗ ଭୀମଦେବ—ଧର୍ମପଦ କଥା, କୋଣାର୍କ ଦେଉଳ ଓ ନରସିଂହଦେବ ।

(୫) ଅନଙ୍ଗପାଳ, ପୃଥ୍ୱୀରାଜ, ଓ ସଂଯୁକ୍ତା—ତରାଇନଯୁଦ୍ଧ ଓ ମହମ୍ମଦ ଘୋରୀ—ଲକ୍ଷ୍ମଣସେନ ଓ ଓଡ଼ିଶା—କୁତବୁଦ୍ଦିନ ଓ କୁତବସ୍ତମ୍ଭ ।
ଖିଲିଜି ଆଲ୍ଲାଉଦ୍ଦିନ ଓ ପଦ୍ମିନୀ—ହିନ୍ଦୁ ଅତ୍ୟାଚାର ।
ମହମ୍ମଦ ତୋଗଲକ—ତମ୍ବା ଟଙ୍କା ଓ ଦୌଲତାବାଦ ରାଜଧାନୀ ।
ପାଟଣା ଓ ସମ୍ବଲପୁର ରାଜ୍ୟ—ରମଣୀୟ ଦେବ,
ବୈଜଳ ଦେବ ଓ ନରସିଂହନାଥ—ନରସିଂହ ଦେବ,
ବଳରାମ ଦେବ, ବଳିୟାର ଦେବ, ଓ ବୌଦଯୁଦ୍ଧ ।
କପିଳେନ୍ଦ୍ର ଦେବ—ପୁରୁଷୋତ୍ତମ ଦେବ ଓ ପଦ୍ମାବତୀ—କାଞ୍ଚୀଯୁଦ୍ଧ—ପ୍ରତାପରୁଦ୍ର ଓ ଶ୍ରୀଚୈତନ୍ୟ ।

(୬) ବାବର ଓ ପାନିପଥ ଯୁଦ୍ଧ—ଶେରସାହ ଓ ହୋଦରମଲ୍ଲ—ଆକବର—ରଣାପ୍ରତାପ, ଦୁର୍ଗାବତୀ, ଚାନ୍ଦବୀବୀ—ନବରତ୍ନ—ଆକବର—ସୁଲେମାନ, କଳାପାହାଡ଼—ମୁକୁନ୍ଦ ଦେବ ଓ ବାରବାଟି—ମାନସିଂହ ।
ଜାହାଙ୍ଗିର—ସାହଜାହାନ ଓ ତାଜମହଲ—ଆଓରଙ୍ଗଜେବ—ରାଜସିଂହ, ଦୁର୍ଗାଦାସ, ତେଗବାହାଦୁର, ଗୁରୁ ଗୋବିନ୍ଦ ସିଂହ—ଶିବାଜୀ—ବିଶ୍ୱନାଥ; ବାଜୀରାଓ, ବାଲଜୀ ବାଜୀରାଓ—ତୃତୀୟ ପାନିପଥ ଯୁଦ୍ଧ ।

(୭) ଇଂରାଜ ବାଣିଜ୍ୟ କୋଠି—କଲିକତା, ବୋମ୍ବେଇ ଓ ମାନ୍ଦ୍ରାଜ—କ୍ଲାଇବ ଓ ପଲସିଯୁଦ୍ଧ—ଦ୍ୱିଶାସନପ୍ରଣାଳୀ—ୱାରେନ ହେଷ୍ଟିଂସ । ୱେଲେସଲି ଓ ଡେଲହୌସୀ—ରାଜ୍ୟବୃଦ୍ଧି, ଇଂରାଜମାନଙ୍କର ଓଡ଼ିଶା ଅଧିକାର । ଡେଲହୌସି ଓ ନୂତନ ଭାରତ—ସିପାହୀଯୁଦ୍ଧ—ମହାରାଣୀ ଭିକ୍ଟୋରିଆ ଓ ଭାରତରେ ଇଂରାଜ ସାମ୍ରାଜ୍ୟ ।
ଖୋର୍ଦ୍ଧା ପାଇକ ଯୁଦ୍ଧ ଓ ଜଗବନ୍ଧୁ ବକ୍ସି—ସୁରେନ୍ଦ୍ରସାୟୀ ଓ ସମ୍ବଲପୁର ।

(୮) ଭାରତର ଜାତୀୟ ଆନ୍ଦୋଳନ —
ଦାଦାଭାଇ ନାଓରଜୀ, ବାଳ ଗଙ୍ଗାଧର ତିଳକ, ଗୋପାଳକୃଷ୍ଣ ଗୋଖଲେ — ପ୍ରଥମ ପୃଥିବୀ ସମର — ମୋହନଦାସ କରମଚାନ୍ଦ ଗାନ୍ଧି—ଅହିଂସା ନୀତି, ଆଇନ ଅମାନ୍ୟ ଆନ୍ଦୋଳନ, ଗୋପବନ୍ଧୁ ଦାଶ—ଗାନ୍ଧି-ଇରୁଇନ ସନ୍ଧି ଓ ଗୋଲଟେବଲ ବୈଠକ—ଦ୍ୱିତୀୟ ପୃଥିବୀ ସମର —

ସୁଭାଷଚନ୍ଦ୍ର ବୋଷ ଓ ଦ୍ୱନ୍ଦବାହିନୀ—ଭାରତ ଛାଡ଼ ପ୍ରସ୍ତାବ-ଭାରତର ସ୍ୱାଧୀନତା ।

(୯) ସ୍ୱାଧୀନ ଭାରତ ରାଷ୍ଟ୍ର --

ଜବାହରଲାଲ ନେହେରୁ, ରାଜେନ୍ଦ୍ର ପ୍ରସାଦ, ହରେକୃଷ୍ଣ ମହତାବ --ଭାରତର ଶାସନ ଓ କ୍ରମିକ ଉନ୍ନତି ।

ଓଡ଼ିଶାର ଶାସନ ଓ ନେତାଗଣ--ଓଡ଼ିଶାର ଉନ୍ନତି, ଗଡ଼ଜାତ ରାଜ୍ୟ, ଢୁଢୁମା ଓ ହୀରାକୁଦ, ବୈଷୟିକ ଉନ୍ନତି ।

(୧୦) ସିଭିକ୍ସ (ପୌରନୀତି)--

(କ) ଗ୍ରାମ ଓ ନଗର - ମ୍ୟୁନିସିପାଲିଟି, ଡିଷ୍ଟ୍ରିକ୍ଟ ବୋର୍ଡ଼, ପଞ୍ଚାୟତ ଓ ଅଞ୍ଚଳ ଶାସନ ।

(ଖ) ଥାନା, ସବଡ଼ିଭିଜନ, ଜିଲ୍ଲା, ରାଜ୍ୟ ଓ ତହିଁର ଶାସନ ।

(ଗ) ଫୌଜଦାରି ଓ ଦେବାନୀ ଅଦାଲତ, ହାଇକୋର୍ଟ ଓ ସୁପ୍ରିମ କୋର୍ଟ ।

(ଘ) ଶିକ୍ଷା, ପୋଲିସ, ପୋଷ୍ଟ ଅଫିସ ଓ ରେଲବେ ।

(ଙ) ରାଜ୍ୟ ଶାସନ -- ରାଷ୍ଟ୍ର ଶାସନ -

ରାଜ୍ୟ ଓ ରାଷ୍ଟ୍ରର ସମ୍ପର୍କ ।

(ଚ) ରାଷ୍ଟ୍ରସଂଘ ।

## ଐତିହାସିକ ସାହିତ୍ୟ

୧- ପୃଥିବୀର ଜନ୍ମ—ଜଳ ଓ ସମୁଦ୍ରର ସୃଷ୍ଟି—ଉଦ୍ଭିଦ ଓ ଜୀବ ସୃଷ୍ଟି—ଡାରୁଇନ ଓ ବିବର୍ତ୍ତନ ବାଦ— ମାଙ୍କଡ଼ ଓ ମନୁଷ୍ୟ । ପୃଥିବୀର ଓ ଭାରତର ଆଦିମ ମାନବ ।

ମୃଗୟା ଓ କୃଷି— ରାଜା କିପରି ହେଲେ ।

୨- ପୃଥିବୀର ପ୍ରାଚୀନ ନଗର—
ଭାରତର ମହେଞ୍ଜୋଦାଡ଼ୋ ଓ ହରପ୍‌ପା, ଇନ୍ଦ୍ରପ୍ରସ୍ଥ, କାଶୀ, ରାଜଗୃହ ଓ ପାଟଳିପୁତ୍ର ।
ମଧ୍ୟ ଆସିଆର ବେବିଲନ, ନିନେଭେ, ଆସୁର ଓ ଦାମାସ୍କସ ।
ମିଶରର ମେମ୍ଫିସ, ଲୁକ୍‌ସର ଓ କାର୍ଣ୍ଣକ—ପିରାମିଡ଼୍ ।
ଚୀନର ପ୍ରାଚୀର ।
ମେକ୍‌ସିକୋର ୟୁକାତନ, ଦକ୍ଷିଣ ଆମେରିକାର ପେରୁ ।
ଗ୍ରୀସ ଓ ଇଟାଲି ।

୩- ଭାରତର ଆର୍ଯ୍ୟଜାତି—ସୁଦାସ ଓ ଦଶ ରାଜଯୁଦ୍ଧ—ବଶିଷ୍ଠ ଓ ବିଶ୍ୱାମିତ୍ର—ଆର୍ଯ୍ୟାବର୍ତ୍ତ ଓ ଲଙ୍କାଯୁଦ୍ଧ—ମହାଭାରତ ଯୁଦ୍ଧ ଓ ଶ୍ରୀକୃଷ୍ଣ, କଂସ ଓ ଜରାସନ୍ଧ, ରାଜଗୃହ ଓ ଦ୍ୱାରକା ।

୪- ଭାରତର ପ୍ରାଚୀନ ବାଣିଜ୍ୟ —
କଳିଙ୍ଗର ପାରେସମୁଦ୍ର ସାମ୍ରାଜ୍ୟ—
ପାରସ୍ୟ, ମିଶର, ଗ୍ରୀସ, ଚୀନ, ବ୍ରହ୍ମଦେଶ, ଶ୍ୟାମ, ସିଂହଳ ଓ ପୂର୍ବଭାରତ ଦ୍ୱୀପପୁଞ୍ଜ ।

୫- ହର୍ଷବର୍ଦ୍ଧନ — ନାଳନ୍ଦା ଓ ହୁଏନ୍‌ସାଂ — ତକ୍ଷଶିଳା ଓ ବାଗଦାଦର ଖଲିଫା—ସଂସ୍କୃତିର ବିନିମୟ ।

୬- ଇସଲାମର ଜନ୍ମ—ବାଣିଜ୍ୟ ପଥରୋଧ - କଲମ୍ବସ ଓ ଭାସ୍କୋଡ଼ାଗାମା—ଭାରତରେ ବାଣିଜ୍ୟ କୋଠି—ଇଂରାଜ ରାଜ୍ୟ ପ୍ରତିଷ୍ଠା ଓ ମହାରାଣୀ ଭିକ୍ଟୋରିଆ ।

ଭାରତର ବୈଷୟିକ ଉନ୍ନତି—ଜେମସଓ୍ବାଟ୍, ଷ୍ଟିଫେନସନ,
ଏଡ଼ିସନ ଓ ଡେଲହୌସୀ ।
ଭାରତର ପ୍ରାଚୀନ ଶିଳ୍ପ— ଲଙ୍କାଶାୟାରର ଯନ୍ତ୍ରଶିଳ୍ପ —
ଭାରତର ଦାରିଦ୍ର୍ୟ ।
ମାର୍କନି— ଚଳଚିତ୍ର, ବେତାର ଓ ରେଡ଼ିଓ ।
ରାଇଟ୍ ଭ୍ରାତାଦ୍ୱୟ — ଉଡ଼ାଜାହାଜ ।
ବିଜ୍ଞାନର ଆଧୁନିକ ଉନ୍ନତିର କାହାଣୀ ଓ ପରମାଣୁ ଶକ୍ତି ।

୭- ପୃଥିବୀ ମହାସମର—ଗଣତନ୍ତ୍ର ଶାସନ—ବିଶ୍ୱ ଜାତିସଂଘ—
ବିଶ୍ୱସରକାର ସ୍ଥାପନ କଳ୍ପନା—ପୃଥିବୀ ଗୋଟିଏ ପରିବାର ।
ସ୍ୱାଧୀନ ଭାରତର ପ୍ରଗତି—ବୁଦ୍ଧ, ଅଶୋକ ଓ ଗାନ୍ଧି—
ଭାରତର ଅହିଂସାନୀତି ଓ ଶାନ୍ତିବାଣୀ ।

ଷଷ୍ଠ ଓ ସପ୍ତମ ଶ୍ରେଣୀମାନଙ୍କରେ ଭାରତର ପୂର୍ଣ୍ଣାଙ୍ଗ ବିବରଣୀ ଓ ପୌରନୀତିରୁ ସମସ୍ତ ଜ୍ଞାତବ୍ୟ ବିଷୟ ସରଳ ଆକାରରେ ଶିକ୍ଷା ଦିଆଯିବା ବିଧେୟ । ଚତୁର୍ଥ ଓ ପଞ୍ଚମ ଶ୍ରେଣୀ ପରି ଏଠାରେ ପୃଥିବୀ ଇତିହାସରୁ ଅଧିକ ବିସ୍ତୃତ ଆକାରରେ ଗଳ୍ପମାନ ସମ୍ମିଳିତ କରି ଖଣ୍ଡିଏ ଐତିହାସିକ ସାହିତ୍ୟ ରହିବା ଦରକାର, ସେଥିରେ ଭୌଗୋଳିକ ଓ ବୈଜ୍ଞାନିକ ଗଳ୍ପମାନ ମଧ୍ୟ ସମାବିଷ୍ଟ ହୋଇ ରହିବ ।

ଭାରତର ଇତିହାସ — ( ଷଷ୍ଠ ଓ ସପ୍ତମ ଶ୍ରେଣୀ ) :

୧- ଭାରତର ଆଦିମ ଅଧିବାସୀ — କୋଲ ଓ ଦ୍ରାବିଡ଼ ଜାତି—
ସିନ୍ଧୁ ସଭ୍ୟତା—ହରପ୍ପା ଓ ମହେଞ୍ଜୋଦାଡ଼ୋ ।

୨- ଆର୍ଯ୍ୟଜାତି — ଉପନିବେଶ — ସମାଜ, ଧର୍ମ, ଓ ଶାସନ ।
ସାହିତ୍ୟ—ବେଦ, ସ୍ମୃତି, ପୁରାଣ, -ରାମାୟଣ ଓ ମହାଭାରତ ।
୩- ଜୈନ ଓ ବୌଦ୍ଧ ମତ ।
୪- ଶୈଶୁନାଗ, ହର୍ଯ୍ୟଙ୍କ, ନନ୍ଦ ଓ ମୌର୍ଯ୍ୟବଂଶ
— ଚନ୍ଦ୍ରଗୁପ୍ତ ଓ ଅଶୋକ ।
୫- ଖାରବେଳ ଓ କଳିଙ୍ଗ ସାମ୍ରାଜ୍ୟ ।
୬- କୁଶାଣ ବଂଶ ଓ କନିଷ୍କ— ବୌଦ୍ଧମତର ପ୍ରସାର ।
୭- ଗୁପ୍ତ ସାମ୍ରାଜ୍ୟ—୧ମ ଚନ୍ଦ୍ରଗୁପ୍ତ, ସମୁଦ୍ରଗୁପ୍ତ, ୨ୟ ଚନ୍ଦ୍ରଗୁପ୍ତ ।
୮- ହର୍ଷବର୍ଦ୍ଧନ—ହର୍ଷଙ୍କ ପରେ ଭାରତର ଅବସ୍ଥା—ରାଜପୁତ ଜାତି ।
୯- ପୃଥ୍ୱୀରାଜ—ଜୟଚନ୍ଦ୍ର—ମହମ୍ମଦ ଘୋରୀ ।
୧୦- ଦିଲ୍ଲୀର ସୁଲତାନ ଗଣ—ଦାସବଂଶ, ଖିଲ୍‌ଜିବଂଶ, ତୋଗଲକ
ବଂଶ—ପାନିପଥ ଯୁଦ୍ଧ ।
୧୧- ମୋଗଲ୍‌ବଂଶ—ଶେରସାହ ।
—ଆକବର, ଜାହାଙ୍ଗିର, ଶାହଜାହାନ ଓ ଆଓରଙ୍ଗଜେବ ।
—ଶିବାଜୀ ଓ ପେଶବାବଂଶ ;
—ଗୁରୁଗୋବିନ୍ଦସିଂହ ଓ ଶିଖଶକ୍ତି ।
—ନାଦିର ସାହ, ଆହମ୍ମଦ ସାହ ଦୁରାଣୀ, ପାନିପଥ ଯୁଦ୍ଧ ।
୧୨- ପାଶ୍ଚାତ୍ୟ ବାଣିଜ୍ୟ—
ଇଂରାଜ ସାମ୍ରାଜ୍ୟର ପ୍ରସାର—କ୍ଲାଇବ, ଓ୍ୱେଲେସଲି, ଡେଲ୍‌-ହୌସୀ, ଇଂରାଜ ଶାସନ ସଙ୍ଗଠନ—କ୍ଲାଇବ, ଓ୍ୱାରେନ ହେଷ୍ଟିଂସ, କର୍ଣ୍ଣୱାଲିସ୍, ବେଣ୍ଟିଙ୍କ, ଡେଲ୍‌ହୌସୀ, କର୍ଜନ ।
ଇଂରାଜ ଭାରତର ବୈଷୟିକ ଉନ୍ନତି—ଡେଲ୍‌ହୌସୀ ।

୧୩- ଭାରତର ଜାତୀୟ ଆନ୍ଦୋଳନ— ସିପାହୀ ଯୁଦ୍ଧ, ଭାରତୀୟ କଂଗ୍ରେସ, —ଦାଦାଭାଇ ନାଓରୋଜୀ, ବାଳ ଗଙ୍ଗାଧର ତିଲକ, ଗୋପାଳକୃଷ୍ଣ ଗୋଖଲେ, ଗାନ୍ଧି, ସୁଭାଷଚନ୍ଦ୍ର ବୋଷ ।

—ପ୍ରଥମ ପୃଥିବୀ ସମର, ସ୍ୱାୟତ୍ତଶାସନ ।

—ଦ୍ୱିତୀୟ ପୃଥିବୀ ସମର, ଭାରତର ସ୍ୱାଧୀନତା ।

୧୪- ଗଣତନ୍ତ୍ର ଭାରତ—ଶାସନର ଅଗ୍ରଗତି ।

—ରାଜେନ୍ଦ୍ର ପ୍ରସାଦ, ଜବାହରଲାଲ ନେହେରୁ ।

## ପୌରନୀତି

୧- ଗ୍ରାମଶାସନ — ଗ୍ରାମ ପଞ୍ଚାୟତ, ଗ୍ରାମପୋଲିସ, ଗ୍ରାମର ସ୍ୱାସ୍ଥ୍ୟ ।

୨- ପୋଲିସ ଶାସନ—ଥାନା, ସବଡ଼ିଭିଜନ ଓ ଜିଲ୍ଲାର ପୋଲିସ ।

୩- ବିଚାର ବିଭାଗ — ଅଞ୍ଚଳ ଶାସନ, ସବଡ଼ିଭିଜନ, ଜିଲ୍ଲା ଓ ରାଜ୍ୟର ବିଚାର ବିଭାଗ —ଦେବାନି, ଫୌଜଦାରି ଓ ରାଜସ୍ୱ ଅଦାଲତ । ହାଇକୋର୍ଟ ଓ ସୁପ୍ରିମ କୋର୍ଟ ।

୪- ବ୍ୟବସ୍ଥା ବିଭାଗ — ରାଜ୍ୟବ୍ୟବସ୍ଥା ସଭା ଓ ରାଷ୍ଟ୍ର ବ୍ୟବସ୍ଥା ସଭା । ମନ୍ତ୍ରୀ ଶାସନ— ସେକ୍ରେଟେରିଏଟ୍, ଗଭର୍ଣ୍ଣର ଓ ରାଷ୍ଟ୍ରପତି ।

୫- ସେନା ବିଭାଗ ।

୬- ଡ଼ାକ ଓ ତାର ବିଭାଗ—ଆୟବ୍ୟୟ ।

୭- ରେଲ ବିଭାଗ — ଆୟବ୍ୟୟ ।

୮- ଶିକ୍ଷା ବିଭାଗ ଓ ବିଶ୍ୱବିଦ୍ୟାଳୟ ।

୯- ସ୍ଥାନୀୟ ସ୍ୱାୟତ୍ତ ଶାସନ—ଅଞ୍ଚଳ ଶାସନ, ମ୍ୟୁନିସିପାଲିଟି, ଜିଲ୍ଲାବୋର୍ଡ଼ ।

୧୦- ବାଣିଜ୍ୟ, ବ୍ୟବସାୟ ଓ ଶିଳ୍ପ -
କୃଷି, ଯୌଥ ବ୍ୟବସାୟ,ସମବାୟ ସମିତି, ଶିଳ୍ପ, ବୈଦେଶିକ ବାଣିଜ୍ୟ ।

୧୧- କର ଓ ଶୁଳ୍କ –
ଭୂମିଖଜଣା, ଆୟକର, ଅବକାଶ କର, ବାଣିଜ୍ୟ ଶୁଳ୍କ, ରେଳଭଡ଼ା, ଡ଼ାକ ଓ ତାର ମାସୁଲ ।

୧୨- ବ୍ୟକ୍ତିଗତ ନିରାପତ୍ତା; ସାମାଜିକ ନିରାପତ୍ତା; ବ୍ୟକ୍ତି ପରିବାର ଓ ସମାଜର ସଙ୍ଗଠନ ଓ ସହଯୋଗ ।

୧୩- ରାସ୍ତାରେ ଯିବା ନିୟମ ।

୧୪- ସାମାଜିକ ଏକତା ଓ ସୌଜନ୍ୟ ଶିକ୍ଷା ।

୧୫- ଅନୁନ୍ନତ ସମ୍ପ୍ରଦାୟ ।

୧୬- ବିଶ୍ୱମାନବିକତା - ବିଶ୍ୱପରିବାର, ବିଶ୍ୱଜାତିସଂଘ ଓ ବିଶ୍ୱ-ସରକାର ।

୧୭- ଗଣତନ୍ତ୍ର ଶାସନ — ରାଜ୍ୟ ଓ ରାଷ୍ଟ୍ରର ସମ୍ପର୍କ ।

## ଐତିହାସିକ ସାହିତ୍ୟ

ବିଶ୍ୱ ଓ ରାଷ୍ଟ୍ର କାହାଣୀ —

୧- ପୃଥିବୀ—ଉଦ୍ଭିଦ ଓ ପ୍ରାଣୀର ସୃଷ୍ଟି—ମନୁଷ୍ୟର ଆବିର୍ଭାବ ।

୨- ଆଦିମ ମାନବ ଓ ସଭ୍ୟତା ଓ ସମାଜର ପ୍ରବର୍ତ୍ତନ ।

୩- ନଦୀକୂଳ ସଭ୍ୟତା— ସୁମେର, ମିଶର, ଚୀନ ଓ ଭାରତ ।

୪- ପାରସ୍ୟ -- ଜୋରୋଷ୍ଟାର, ସାଇରସ, ଡେରାୟସ--ଗ୍ରୀକ୍ ଓ ରୋମାନ ସଭ୍ୟତା -- ଗଣତନ୍ତ୍ର ଶାସନ - ଭାରତର ଗଣତନ୍ତ୍ର ଓ ରାଜତନ୍ତ୍ର ରାଜ୍ୟ ।

୫- ଆଲେକଜାଣ୍ଡାର --ପ୍ରାଚ୍ୟ ପାଶ୍ଚାତ୍ୟ ସମ୍ପର୍କ -- ବାଣିଜ୍ୟ ଓ ସଂସ୍କୃତି ।

୬- ବୁଦ୍ଧ - ଅଶୋକ - କନିଷ୍କ - ଯୀଶୁଖ୍ରୀଷ୍ଟ ।

୭- ରୋମ ସାମ୍ରାଜ୍ୟ - କନଷ୍ଟେଣ୍ଟାଇନ - ମହମ୍ମଦ - ହରନଲ ରସିଦ - ଚାଇସଂ - ହର୍ଷବର୍ଦ୍ଧନ ।

ମୁସଲମାନ ସାମ୍ରାଜ୍ୟ - ତୁରସ୍କର ଉତ୍‌ଥାନ ।

୮- ମଙ୍ଗୋଲ ଖାଁ ବଂଶ - ମାର୍କୋପୋଲୋ - ଭାରତ ଓ ଚୀନର ବାଣିଜ୍ୟ ।

୯- ୟୁରୋପର ଜାଗରଣ --

(୧) ଭୌଗୋଳିକ ଉନ୍ନତି - କଲମ୍ବସ ଓ ଭାସ୍କୋଡ଼ାଗାମା, ଡ୍ରେକ ।

(୨) ବୈଜ୍ଞାନିକ ଉନ୍ନତି - କୋପାରନିକସ, ଗାଲିଲିଓ, ଗଟେନବର୍ଗ, ତୋପ ଓ ବାରୁଦ ।

(୩) ରାଜନୈତିକ ଜାଗରଣ - ସାମ୍ରାଜ୍ୟବାଦ ।

୧୦- ଆମେରିକାର ସ୍ୱାଧୀନତା ଯୁଦ୍ଧ - ଫରାସୀ ରାଷ୍ଟ୍ର ବିପ୍ଳବ - ଗଣତନ୍ତ୍ର ଶାସନ ।

୧୧- ଯନ୍ତ୍ର ବିପ୍ଳବ ଓ ଶିଳ୍ପର ଉନ୍ନତି --

ବାଷ୍ପଯନ୍ତ୍ର - ପେଟ୍ରୋଲ - ରେଲଗାଡ଼ି, ଉଡ଼ାଜାହାଜ, ବିଜୁଳି-ତାରବେତାର, ରେଡ଼ିଓ, ସିନେମା, ଚକ୍‌ସା ।

୧୨- ପୃଥିବୀ ମହାସମର-ପରମାଣୁ ବୋମା-ଭାରତର ସ୍ୱାଧୀନତା । -- ଗାନ୍ଧି ଓ ଅହିଂସାବାଦ ।

## ଉଚ୍ଚ ବିଦ୍ୟାଳୟ୍...

ଉଚ୍ଚ ବିଦ୍ୟାଳୟର ଅଷ୍ଟମ ଶ୍ରେଣୀରେ ପୃଥିବୀ ଇତିହାସର ଏକ ଧାରାବାହିକ ଧାରଣା ସରଳ ଓ ସହଜ ରୂପରେ ଦିଆଯିବା ଉଚିତ । ନବମ, ଦଶମ ଓ ଏକାଦଶ ଶ୍ରେଣୀରେ ଭାରତର ଜାତୀୟ ଇତିହାସ ଓ ପୃଥିବୀ ଇତିହାସର ସାଧାରଣ ଜ୍ଞାନ ପରସ୍ପର ସମନ୍ୱୟ ରଖି ଶିକ୍ଷା ଦିଆଯିବା ଉଚିତ ।

ଅଷ୍ଟମ ଶ୍ରେଣୀ—ପୃଥିବୀ ଇତିହାସ :—

୧- ପୃଥିବୀର ଗଠନ – ଉଦ୍ଭିଦ ଓ ପ୍ରାଣୀମାନଙ୍କର ବିବର୍ତ୍ତନ— ପ୍ରାଚୀନ ଓ ନୂତନ ପ୍ରସ୍ତର ଯୁଗର ମାନବ—ଅଗ୍ନିର ବ୍ୟବହାର—କୃଷିର ଆବିଷ୍କାର—ଯୁଦ୍ଧର ଆବଶ୍ୟକତା—ଦଳଗଠନ —ଦଳପତି ଓ ରାଜ୍ୟର କାର୍ଯ୍ୟ—ସଭ୍ୟତାର ଉନ୍ମେଷ ।

୨- ନଦୀକୂଳ ସଭ୍ୟତା—(କ) ସୁମେରିଆର ନଗରରାଜ୍ୟ— ସାରଗନ, ହେମୁରାବି, ତିଗଲଥ ପିଲେସାର, ସାମ୍ରାଜ୍ୟବିଶିଷ୍ଟ, ନେବୁଚାଡ୍ନେଜାର । କୀଲଲିପି (Cuneiform writing) ଓ ଚିତ୍ରଲିପି (Hieroglyphic writing).

(ଖ) ମିଶର—ନୀଳନଦୀର ସଭ୍ୟତା—ମିନିଜ, କିଅପସ—ମେମ୍ଫିସ ଓ ପିରାମିଡ୍—ଏମେନୋଫିସ—ଲୁକ୍ସର, କାର୍ଣ୍ଣକ ଓ ଡେଲେଲଅମର୍ଣ୍ଣା—ମିଶରର ଚିତ୍ରଲିପି ।

(ଗ) ଭାରତ—ସିନ୍ଧୁଅବବାହିକାର ସଭ୍ୟତା —ହରପ୍ପା, ମହେଞ୍ଜୋଦାଡ଼ୋ, ଇନ୍ଦ୍ରପ୍ରସ୍ଥ ଓ କାଶୀ—ସିନ୍ଧୁ ଅବବାହିକାର ଲିପି—ଆର୍ଯ୍ୟଜାତି – ସୁଦାସ, ବଶିଷ୍ଠ, ବିଶ୍ୱାମିତ୍ର ଓ ଦଶରାଜଯୁଦ୍ଧ—ଭରତ ଓ ପୌରବ ବଂଶ—ଋକ୍‌ବେଦ

ରଚନା—ବୁଦ୍ଧ ଓ ଅଶୋକ—ବ୍ରାହ୍ମୀ, ଖାରଷ୍ଠି ଲିପି ଓ ପାଲିଭାଷା ।

(ଘ) ଚୀନ—ଶାଂ ଓ ହାଂ ବଂଶ—ହ୍ୱାଂହୋ ଓ ୟାଂ ଶିକ୍ୟାଂ ସଭ୍ୟତା—ଶିହୁାଂଡି ଓ ଚୀନର କୁଇଂ ଲଂ ପ୍ରାଚୀର । ତାଇ ସଂ ଓ ଚୀନସଂସ୍କୃତି । କଂ ଫୁ ସୀ ଓ ଚୀନସମାଜ ।

୩. ପାରସ୍ୟ—ଜୋରାଷ୍ଟ୍ରାର, ସାଇରସ ଓ ଡେରିୟୁସ ।

୪- ପେଲେଷ୍ଟାଇନ ଓ ଇହୁଦୀ ଜାତି—ଅବ୍ରାହାମ, ଜେକବ, ମୋସେସ ଓ ସଲେମନ ।

୫- ଗ୍ରୀସ୍—ଏଥେନ୍ସ ଓ ସ୍ପାର୍ଟା—ଗଣତନ୍ତ୍ର ଶାସନ—ଅଲିମ୍ପିଆ କ୍ରୀଡ଼ାପ୍ରତିଯୋଗିତା ।

ମେରେଥନ ଓ ଥେର୍ମୋପିଲି—ପେରିକ୍ଲସ । ସକ୍ରେଟିସ, ଏରିଷ୍ଟଟଲ, ୟୁକ୍ଲିଡ୍, ହେରୋଡୋଟସ ଓ ହୋମାର । ଆଲେକଜାଣ୍ଡାର—ପାରସ୍ୟ ଅଭିଯାନ—ଆର୍ବିଲେଯୁଦ୍ଧ, —ଭାରତ ଅଭିଯାନ—ହିଦାସ୍ପ ଯୁଦ୍ଧ ।

୬- ରୋମ—ରୋମାନ ଗଣତନ୍ତ୍ର—ପ୍ୟୁନିକ ଯୁଦ୍ଧ । ରୋମାନ ସାମ୍ରାଜ୍ୟ—ଜୁଲିୟସ ସିଜର ।

୭- ଯୀଶୁଖ୍ରୀଷ୍ଟ—କନଷ୍ଟେଣ୍ଟାଇନ—ଅଗଷ୍ଟସ—ଜଷ୍ଟିନିଏନ ଓ କନଷ୍ଟାଣ୍ଟିନୋପଲ—ବ୍ୟବସ୍ଥାଶାସ୍ତ୍ର ।

୮- ମହମ୍ମଦ ଓ ଇସଲାମ—

— ବାଗଦାଦର ଖଲିଫା ଓ ହାରୁନଲ୍ ରସିଦ ।

— ସାର୍ଲେମେନ ଓ ପବିତ୍ର ରୋମାନ ସାମ୍ରାଜ୍ୟ ।

— ଚାଇନ୍ସ୍‌ ଓ ଚୀନରେ ଖ୍ରୀଷ୍ଟାନ ଓ ମୁସଲମାନ ଧର୍ମ ।
— ହୁଏନ ସାଂ ଓ ଭାରତ ଭ୍ରମଣ ।
— ହର୍ଷବର୍ଦ୍ଧନ ଓ ନାଳନ୍ଦା ବିଶ୍ୱବିଦ୍ୟାଳୟ ।
— ଓଡ଼ିଶାର ଚଣ୍ଡୀହାର ପଞ୍ଚାତ ମହାଶିବ ଓ ଚାଇ ସଂଙ୍କ ମଧ୍ୟରେ ସମ୍ପର୍କ—ପ୍ରଜ୍ଞା ଓ ଗଣ୍ଡବ୍ୟୂହ ବୌଦ୍ଧଧର୍ମଗ୍ରନ୍ଥ ।
— ରୋମ, ପାରସ୍ୟ, ଚୀନ ଓ ଭାରତ ମଧ୍ୟରେ ବାଣିଜ୍ୟ ଓ ସଂସ୍କୃତର ବନ୍ଧନ ।

୯- ମଙ୍ଗୋଲ ଜାତି—ଚଙ୍ଗିଜ, କୁବଲେ—ମାର୍କୋପୋଲୋ—ୟୁରୋପ, ପାରସ୍ୟ ଓ ଆସିଆର ବାଣିଜ୍ୟସମ୍ପର୍କ ।

୧୦- ତୁରସ୍କମାନଙ୍କର କନଷ୍ଟାଣ୍ଟିନୋପଲ ଅଧିକାର—
(କ) ଗ୍ରୀକ୍ ସଂସ୍କୃତର ପ୍ରସାର—କୋପରନିକସ, ଗାଲିଲିଓ, ଗଟେନବର୍ଗ ଚୋପ ଆବିଷ୍କାର, କଲମ୍ବସ, ମାର୍ଟିନ ଲୁଥର—ନୂତନ ଯୁଗ ଓ ଜାଗରଣ ।
(ଖ) ଆମେରିକାରେ ୟୁରୋପଉପନିବେଶ—ଭାସ୍କୋଡାଗାମା ଓ ପ୍ରାଚ୍ୟ ବାଣିଜ୍ୟ—ଭାରତରେ ୟୁରୋପୀୟ ରାଜ୍ୟ ।

୧୧- ଗଣ ଆନ୍ଦୋଳନ—
ଆମେରିକାର ସ୍ୱାଧୀନତା ଯୁଦ୍ଧ—ଫରାସୀ ରାଷ୍ଟ୍ରବିପ୍ଳବ—ଭାରତର ଇଂରାଜ ସାମ୍ରାଜ୍ୟ—କ୍ଲାଇବ, ୱେଲେସଲି ଓ ଡେଲହୌସୀ ।

୧୨- ଶିଳ୍ପ ଆନ୍ଦୋଳନ—ଆର୍କରାଇଟ୍, ଜେମସୱାଟ, ଷ୍ଟିଫେନସନ
— ବାଷ୍ପଯନ୍ତ୍ର ।
ସମାଜବାଦ—ରବର୍ଟ ଓୟେନ, କାର୍ଲମାର୍କ୍ସ ।

୧୩- ରାଷ୍ଟ୍ର ଆନ୍ଦୋଳନ—

ଇଟାଲିର ଏକତ୍ରୀକରଣ – ମାତ୍‌ସିନି, ଗେରିବାଲ୍‌ଡ଼ି, ଏମାନୁଏଲ । ଜାର୍ମାନୀର ଏକତ୍ରୀକରଣ – ପ୍ରଥମ ଉଇଲିୟମ, ବିସ୍ମାର୍କ, ଦ୍ୱିତୀୟ ଉଇଲିୟମ ।

୧୪- ଜ୍ଞାନ ଆନ୍ଦୋଳନ—

ଡାରୁଇନ୍—ପାଷ୍ଟୁର—ଲିଷ୍ଟାର—ରାଇଟ୍ ଭ୍ରାତାଦ୍ୱୟ—ଏଡିସନ—ମାର୍କନି ।

୧୫- ଜାପାନର ଉନ୍ନତି—ମୁଟ୍‌ସିହିଟୋ, ମିକାଡୋ ।

ରୁଷର ବିପ୍ଳବ—ଜାରଶାସନ, ଟଲ୍‌ଷ୍ଟୟ ।

ଚୀନରେ ୟୁରୋପର ଅତ୍ୟାଚାର—ବକସାର ଯୁଦ୍ଧ ।

୧୬- ପ୍ରଥମ ପୃଥିବୀ ମହାସମରର ପରିଣତି—

(କ) ଜର୍ମାନି—ହିଟଲର ।

(ଖ) ରୁଷିଆ—ଲେନିନ ଓ ଷ୍ଟାଲିନ ।

(ଗ) ତୁରସ୍କ—କମଲପାଶା ଓ ମୁସୋଲିନି ।

(ଘ) ଚୀନ—ଚ୍ୟାଂ କାଇଶେକ ।

(ଙ) ଭାରତ—ଗାନ୍ଧି ।

୧୭- ଦ୍ୱିତୀୟ ପୃଥିବୀ ମହାସମରର ପରିଣତି—

(କ) ଭାରତର ଓ ଅନ୍ୟାନ୍ୟ ଦେଶର ଗଣତନ୍ତ୍ର ।

(ଖ) ଅହିଂସାବାଦ, ଜାତିର ସ୍ୱାଧୀନତାବାଦ ।

(ଗ) ପରମାଣୁ ଯୁଗ ଓ ବିଶ୍ୱଜାତିସଂଘ— ବିଶ୍ୱସରକାର କଳ୍ପନା ।

ନବମ, ଦଶମ ଓ ଏକାଦଶ ଶ୍ରେଣୀରେ ପୃଥିବୀ ଇତିହାସ ସଙ୍ଗେ ଭାରତର ଜାତୀୟ ଇତିହାସକୁ ପରସ୍ପର ସମନ୍ୱୟ ରକ୍ଷି ଶିକ୍ଷା ଦିଆଯିବା ଉଚିତ । ଭାରତୀୟ ସଂସ୍କୃତି ଓ ସଭ୍ୟତା କିପରି ବିକାଶ ହୋଇଅଛି, ପୃଥିବୀର ସଂସ୍କୃତି ଓ ସଭ୍ୟତା ଭାରତୀୟ ସଂସ୍କୃତି ଓ ସଭ୍ୟତା ଉପରେ କି ପ୍ରଭାବ ପକାଇଅଛି ଏବଂ ଅନ୍ୟ ପକ୍ଷରେ ଭାରତ ପୃଥିବୀର ସଭ୍ୟତା ଓ ସଂସ୍କୃତିକୁ କିପରି ପ୍ରଭାବିତ କରିଅଛି, ତତ୍ପ୍ରତି ପାଠ୍ୟର ଅଧିକ ସଙ୍ଗତି ରହିବ ।

**ନବମ, ଦଶମ ଓ ଏକାଦଶ ଶ୍ରେଣୀ**–ଭାରତର ଜାତୀୟ ଇତିହାସ:-

(୧) ପୃଥିବୀର ସୃଷ୍ଟି ଓ ବିବର୍ତ୍ତନବାଦ—ବରଫାବୃତ ଅଞ୍ଚଳ ଓ ଭାରତ—ହିମାଳୟର ଉତ୍ପତ୍ତି—ଉତ୍ତରଭାରତ ଓ ଦାକ୍ଷିଣାତ୍ୟର ଗଠନ ।

ମନୁଷ୍ୟର ଆବିର୍ଭାବ—ମେରୁପ୍ରଦେଶରେ ହିବାଗତି—ପ୍ରଲୌକା ଓ ବେଦର ବର୍ଣ୍ଣନା—ପ୍ରାଚ୍ୟପାଶ୍ଚାତ୍ୟ ଭାଷା, ଗୀତନୀତ, ଆଚାର ଓ ଧର୍ମଗତ ସାମଞ୍ଜସ୍ୟ—ୟୁରୋପ, ଇରାନ ଓ ଭାରତର ଆର୍ଯ୍ୟବଂଶ—ଋକ୍‌ବେଦ ଓ ଜେନ୍ଦ ଆବେସ୍ତାର ସାମଞ୍ଜସ୍ୟ ।

ମେସୋପଟେମିଆ ଓ ଭାରତର ସାମଞ୍ଜସ୍ୟ—ଇନ୍ଦ୍ର ଓ ବଳୀ—ଆର୍ଯ୍ୟ-ଅନାର୍ଯ୍ୟ ଯୁଦ୍ଧ । ମିତାନି ବଂଶର ଧର୍ମ ।

କୁରୁପାଣ୍ଡବ ଯୁଦ୍ଧ ଓ ଉଭୟ ବଂଶର ଇତିହାସ ।

ରାମରାବଣ ଯୁଦ୍ଧ ଓ ଇତିହାସ ।

ଶ୍ରୀକୃଷ୍ଣ, କଂସ ଓ ଜରାସନ୍ଧ ଓ ଇତିହାସ ।

(୨) ନଦୀକୂଳ ସଭ୍ୟତା—(କ) ସୁମେରୁ, ମିଶର, ଚୀନ

—ଚିତ୍ରଲିପି ଓ କୀଳଲିପି

— ବ୍ରାହ୍ମୀ ଓ ଖାରସ୍ଥି ।

ସମାଜ, ଧର୍ମ ଓ ସଂସ୍କୃତି ।

(ଖ) ଭାରତ—ସିନ୍ଧୁ ଅବବାହିକାର ସଭ୍ୟତା—ସିନ୍ଧୁ ଅବବାହିକାର ଲିପିର ପ୍ରାଚୀନତା—ହରପ୍ପା ମହେଞ୍ଜୋଦାରୋ, ଇନ୍ଦ୍ରପ୍ରସ୍ଥ ଓ କାଶୀ, ମଥୁରା ଓ ଦ୍ୱାରକା । ଦ୍ରାବିଡ଼ ଜାତି— ବେଲୁଚିସ୍ଥାନ ଓ ବ୍ରାହୁଇ ଭାଷା — ଦାକ୍ଷିଣାତ୍ୟ ଅଗ୍ରସର ।

ମଧ୍ୟ ଭାରତର ଦ୍ରାବିଡ଼ ଜାତି ।

ଆର୍ଯ୍ୟଜାତି—(କ) ଉପନିବେଶ—ସପ୍ତସିନ୍ଧୁ, ବ୍ରହ୍ମାବର୍ତ୍ତ ବ୍ରହ୍ମର୍ଷିଦେଶ, ମଧ୍ୟଦେଶ, ଆର୍ଯ୍ୟାବର୍ତ୍ତ ଓ ଦାକ୍ଷିଣାତ୍ୟ ।

ବିଭିନ୍ନ ଆର୍ଯ୍ୟଦଳ—ସୁଦାସ, ବଶିଷ୍ଠ ଓ ବିଶ୍ୱାମିତ୍ର, ଦାଶରାଜ୍ଞଯୁଦ୍ଧ ।

ଭରତ ଓ ପୌରବ ବଂଶ ।

(ଖ) ରାଜନୈତିକ ଓ ସାମାଜିକ ସଙ୍ଗଠନ, ଧର୍ମସାହିତ୍ୟ ଦର୍ଶନ, ଶିଳ୍ପ ବାଣିଜ୍ୟକୃଷି ।

(ଗ) ପାରେସମୁଦ୍ର ବାଣିଜ୍ୟ—ତୁଗ୍ର ଓ ଭୁଜ୍ୟୁ— ଅଶ୍ୱିମାନଙ୍କର ସାହାଯ୍ୟ ।

— ବରୁଣ : ଆକାଶପଥ ଓ ଜଳପଥ ।

ମୁଦ୍ରା — ନିଷ୍କ ଓ ଅୟଃ ।

(ଋକ୍‌ବେଦର ଦୃଷ୍ଟାନ୍ତ-୧ମ, ୨ୟ ଓ ୭ମ ମଣ୍ଡଳ)

(ଘ) ଭାରତର ଭାଷା—ବିଭିନ୍ନ ଭାଷାର ସମ୍ପର୍କ— ଭାରତର ଆଧୁନିକ ଭାଷା – ପ୍ରାକୃତ—ସଂସ୍କୃତ –

ବୈଦିକ ସଂସ୍କୃତ—ଭାରତ, ଇରାନ ଓ ୟୁରୋପର ଆର୍ଯ୍ୟ ଭାଷାର ମୂଳଭାଷା ।

(୩) ଧର୍ମଆନ୍ଦୋଳନ—(କ) ଇରାନ ଓ ଜୋରାଷ୍ଟ୍ରାର ।

(ଖ) ଭାରତ ଓ ବୁଦ୍ଧ—ଅଶୋକ, କନିଷ୍କ ଓ ହର୍ଷ ।

(ଗ) ଚୀନ ଓ କଂଫୁସିୟସ ।

(ଘ) ପେଲେଷ୍ଟାଇନ, ଇହୁଦୀ ଜାତି ଓ ଯୀଶୁଖ୍ରୀଷ୍ଟ ।

—ଧର୍ମ ଆନ୍ଦୋଳନର ସାମଞ୍ଜସ୍ୟ, ବୌଦ୍ଧଧର୍ମମତର ଉତ୍କର୍ଷ—ପୃଥିବୀର ହିଂସାଯୁଦ୍ଧ, ବୁଦ୍ଧଙ୍କର ଅହିଂସା ଓ ଗାନ୍ଧିବାଦର ସୌଷ୍ଠବ ।

(୪) ଗ୍ରୀସ ଓ ରୋମର ଗଣତନ୍ତ୍ର—ଭାରତର ବୈଦିକ ଓ ବୌଦ୍ଧ ଯୁଗର ରାଜତନ୍ତ୍ର ଓ ଗଣତନ୍ତ୍ର—ଶିବ, ଯୌଧେୟ, ମାଳବକ, ଲିଚ୍ଛବି, ବୈଶାଳୀ—ଖ୍ରୀଷ୍ଟ ପୂର୍ବ ସପ୍ତମ ଶତାବ୍ଦୀର ପୂର୍ବେ ଭାରତ ।

ମଗଧର ଅଭ୍ୟୁତ୍ଥାନ—ଶୈଶୁନାଗ ଓ ହର୍ଯ୍ୟଙ୍କ ବଂଶ ।

କାଇରସ, ଡେରାୟୁସ, ଥ୍ରାଏକ୍ଲେକ୍ସ, ଜାର୍କିସ, ଆଲେକଜାଣ୍ଡାର, ସିଲ୍ୟୁକସ ।

ଡେରାୟୁସଙ୍କ ଭାରତ ଆକ୍ରମଣ—ଆଲେକଜାଣ୍ଡାରଙ୍କ ପଞ୍ଜାବ ଆକ୍ରମଣ—ନନ୍ଦବଂଶ ଓ ଭାରତ

ମୌର୍ଯ୍ୟବଂଶ—ଚନ୍ଦ୍ରଗୁପ୍ତ, ଅଶୋକ—ବୌଦ୍ଧଧର୍ମ, ଧର୍ମବିଜୟ ଓ ଧର୍ମସାମ୍ରାଜ୍ୟ—ମେଗାସ୍ଥେନିସ, ଡାଏଡୋରସ,

ସିକନ୍ଦର, ଷ୍ଟ୍ରାବୋ ଓ ଆରିୟାନ – ଯୁରୋପରେ ଭାରତର ପ୍ରଭାବ – ମୌର୍ଯ୍ୟବଂଶଦ୍ୱାରା ପୃଥିବୀର ସଭ୍ୟତା ଓ ସଂସ୍କୃତିର ପରିବର୍ତ୍ତନ ।

ହାତୀଗୁମ୍ଫା, ଖଣ୍ଡଗିରି, ଯୋଗୀମଢ଼ା ( ସି. ପି. )ର କାହାଣୀ, ରୋମର ଏମ୍ଫିଥିଏଟର, ଯୋଗୀମଢ଼ାର ନାଟ୍ୟ-ମନ୍ଦିର, ଭାରତର ରଙ୍ଗମଞ୍ଚ ଓ ନୃତ୍ୟସାହିତ୍ୟ ।

ଖାରବେଳ – କଳିଙ୍ଗର ପାରେସମୁଦ୍ର ବାଣିଜ୍ୟ, ତାମିଲଦେଶର ପାରେସମୁଦ୍ର ବାଣିଜ୍ୟ – ପୂର୍ବ ଭାରତ ଦ୍ୱୀପ-ପୁଞ୍ଜରେ ଶୈଳେନ୍ଦ୍ର ସାମ୍ରାଜ୍ୟ – ଉପନିବେଶ, ସଭ୍ୟତା ଓ ସଂସ୍କୃତି । ଫାହିୟାନଙ୍କ ପ୍ରତ୍ୟାଗମନ ପଥ ।

(୬) ଭାରତର ଗୁପ୍ତ, ବର୍ଦ୍ଧନ ଓ ଗୁର୍ଜର ସାମାଜ୍ୟ –

ପବିତ୍ର ରୋମାନ ସାମ୍ରାଜ୍ୟ, ବାଗଦାଦର ଖଲିଫା ସାମ୍ରାଜ୍ୟ, ଚୀନର ସାଂ ସାମ୍ରାଜ୍ୟ ଏବଂ ଭାରତର ବର୍ଦ୍ଧନ ତଥା ଗୁର୍ଜର ସାମ୍ରାଜ୍ୟ ମଧ୍ୟରେ ସଭ୍ୟତା ଓ ସଂସ୍କୃତିର ସମ୍ପର୍କ ।

ତକ୍ଷଶିଳା ଓ ବାଗଦାଦର ଯୋଗସୂତ୍ର, ଆରବମାନଙ୍କର ଆୟୁର୍ବେଦ, ରସାୟନ, ଗଣିତ, ବୟନଶିଳ୍ପ, ଓ ଧାତୁଶିଳ୍ପ । ଚୀନର କାଚଶିଳ୍ପ, ବନ୍ଧୁକ ଓ ବାରୁଦ । ଗୁପ୍ତସାମ୍ରାଜ୍ୟର ବାଣିଜ୍ୟ, ବର୍ଦ୍ଧନ ଅମଳର ବିଦ୍ୟାଚର୍ଚ୍ଚା–ନାଳନ୍ଦା ଓ ହ୍ୱାଂସୁଂ –ହ୍ୱାଂ ସୁଂଙ୍କ ବୌଦ୍ଧଗ୍ରନ୍ଥସଂଗ୍ରହ ଓ ଚୀନ ଭାଷାରେ ଅନୁବାଦ ।

ଭାରତୀୟ, ଚୈନିକ ଓ ଆରବୀ ସଂସ୍କୃତିର ଯୁରୋପରେ ପ୍ରସାର ।

ହୂନ ଆକ୍ରମଣ—ବର୍ଦ୍ଧନବଂଶ, ହର୍ଷବର୍ଦ୍ଧନ ଓ ବୌଦ୍ଧ-ଧର୍ମ—ହର୍ଷ ଓ ଉତ୍ତର ତଥା ଦକ୍ଷିଣ ଭାରତ, ପୁଲକେଶୀ, କଳିଙ୍ଗ ଓ ଶଶାଙ୍କ, ହ୍ୱାଂଚୁଂଙ୍କ ଭାରତବିବରଣୀ—କୋଶଳ, କେଶରୀବଂଶ—ଶ୍ରୀପୁର, ସୁବର୍ଣ୍ଣପୁର, ଚୌଦ୍ୱାର, ଓ ଭୁବନେଶ୍ୱର—ଚୀନର ତାଇ ସଂ ଓ କେଶରୀ ବଂଶର ଯୋଗସୂତ୍ର ।

(୬) ମହମ୍ମଦ କାସିମଙ୍କ ସିନ୍ଧୁ ଆକ୍ରମଣ—
ସୁଲତାନ ମାମୁଦଙ୍କ ଭାରତ ଆକ୍ରମଣ—

ଆନନ୍ଦପାଳଙ୍କ ସମବାୟ ଗଠନ ଚେଷ୍ଟା, ଆଲବିରୁଣୀଙ୍କ ବିବରଣୀ—ଭାରତୀୟ ସଭ୍ୟତାର ସଙ୍କଟ ଓ ଦୁର୍ଗତି ।

ମହମ୍ମଦ ଘୋରୀଙ୍କ ଭାରତ ଆକ୍ରମଣ—ଭାରତର ଭାଗ୍ୟବିପର୍ଯ୍ୟୟ ଓ ଭାରତୀୟ ସଭ୍ୟତାର ନୂତନ ଗତି ।

(୭) ତୁର୍କୋ ଆଫଗାନ ରାଜତ୍ୱ—
ଦାସ, ଖିଲଜି ଓ ତୋଗଲକ ବଂଶର ମୁଖ୍ୟ ବିବରଣୀ—ବିଦେଶୀୟମାନଙ୍କର ଲିଖିତ ବିବରଣୀ—(କ) ଆଲବିରୁଣି, (ଖ) ମିନାଜୁସିରାଜ, (ଗ) ମାର୍କୋପୋଲୋ, (ଘ) ଇବନ-ବତୁତା, (ଙ) କାସିମ ଫେରିସ୍ତା—ଭାରତୀୟ ମୁସଲମାନ ସଂସ୍କୃତିର ମିଶ୍ରଣ ।

(୮) ବାହମନି, ବିଜୟନଗର ଓ ଓଡ଼ିଶା ରାଜ୍ୟ—
ଭାରତୀୟ ସଂସ୍କୃତି ଓ ସଭ୍ୟତା—ବିଦେଶୀୟ ପର୍ଯ୍ୟଟକ—(କ) ନିକଲ କଣ୍ଟି, (ଖ) ଅବଦୁର ରଜାକ, (ଗ) ପେଏଜ, (ଘ) ନୁନିଜ ।

(୯) ମୋଗଲ ଆକ୍ରମଣ—ଚଙ୍ଗିଜ ଖାଁ, କୁବଲେ ଖାଁ, ମାର୍କୋ-ପୋଲୋ—ଏସିଆ, ୟୁରୋପ ଓ ପାରସ୍ୟର ବାଣିଜ୍ୟ ସମ୍ପର୍କ—ବାଣିଜ୍ୟ ପଥ ଓ ପଣ୍ୟ—ପୂର୍ବ ଭାରତୀୟ ଦ୍ୱୀପପୁଞ୍ଜ ସଙ୍ଗେ ପୂର୍ବୋପକୂଳର ବାଣିଜ୍ୟ ଏବଂ ଚୀନ ସଙ୍ଗେ ସମ୍ପର୍କ ।

ଏସିଆ ଓ ୟୁରୋପ ମଧ୍ୟରେ ସଭ୍ୟତା ଓ ସଂସ୍କୃତିର ସମନ୍ୱୟ ।

(୧୦)ମୋଗଲ ବଂଶ—

ବାବର—ପାନିପଥ, ସିକ୍ରି ଓ ଘର୍ଘରା ଯୁଦ୍ଧ

—ହୁମାୟୁନ ଓ ଶେରସାହ—ଶେରସାହଙ୍କ ଶାସନ—

ଆକବର – ସାମ୍ରାଜ୍ୟବିସ୍ତାର—ଭାରତର ଐକ୍ୟ—ରାଣାପ୍ରତାପ

– ଶାସନପ୍ରଣାଳୀ—ଧର୍ମନୀତି

– ଭାରତର ବୈଷୟିକ ଉନ୍ନତି ।

ଜାହାଙ୍ଗିର ଓ ସାହଜାହାନ—ନୁରଜାହାନ, ଟୋମାସରୋ, ସାହଜାହାନଙ୍କ ଶିଳ୍ପୋନ୍ନତି – ମୁର୍ଶିଦକୁଲିଖାଁ—ଦାକ୍ଷିଣାତ୍ୟର ରାଜସ୍ୱବନ୍ଦୋବସ୍ତ

ଆଓରଙ୍ଗଜେବ – ଦାକ୍ଷିଣାତ୍ୟ – ମରହଟ୍ଟା ଜାତିର ଉତ୍ଥାନ-ଧର୍ମନୀତି – ଉତ୍ତର ଭାରତର ବିଦ୍ରୋହ ।

ଶିବାଜୀ ଓ ପେଶବା ବଂଶ – ଭାରତୀୟ ମୁସଲମାନ ସଭ୍ୟତାର ସମ୍ମିଶ୍ରଣ – ଭାରତୀୟ ଜାତି – ଭାରତର ଧର୍ମପ୍ରବର୍ତ୍ତକ ।

– ତୃତୀୟ ପାନିପଥ ଯୁଦ୍ଧ – ଭାରତର ପତନ ।

ମୋଗଲ ସାମ୍ରାଜ୍ୟର ସମୃଦ୍ଧି – ବିଦେଶୀୟ ପର୍ଯ୍ୟଟକଙ୍କ ବିବରଣୀ

(କ) କାସିମ ଫେରିସ୍ତା, (ଖ) ଆବୁଲଫାଜଲ ଓ ଆକବର-ନାମା, (ଗ) ବଦୋନି, (ଘ) ନାଜମୁଦ୍ଦିନ, (ଙ) ନିକଲ-ମାନୁଷୀ, (ଚ) ଆନ୍ତୁନି ମନସାର, (ଛ) ଟୋମାସ ରୋ, (ଜ) ଏଡବାର୍ଡ ଟେରି, (ଝ) ପିଟରମଣ୍ଡି, (ଞ) ଟେବାର୍ଣ୍ଣିୟର, (ଟ) ବାର୍ଣ୍ଣିୟର, (ଠ) ଖାଫିଖାଁ ।

ବିଦେଶରେ ଭାରତର ପ୍ରଶସ୍ତି—ଭାରତୀୟ ବାଣିଜ୍ୟର ଆକର୍ଷଣ—ପର୍ତ୍ତୁଗିଜ, ଫରାସୀ ଓ ଇଂରାଜ ଉପନିବେଶ—ଭାରତର ଶ୍ରୀ ଭାରତର ପତନ ଓ ପରାଧୀନତାର କାରଣ—ଭାରତକୁ ୟୁରୋପରୁ ଜଳପଥର ଆବିଷ୍କାର—କଲମ୍ବସ ଓ ଆମେରିକା—ଭାସ୍କୋଡାଗାମା ଓ ଉତ୍ତମାଶା ଅନ୍ତରୀପ—ପାଶ୍ଚାତ୍ୟ ବାଣିଜ୍ୟ ଓ ବାଣିଜ୍ୟକୋଠି—ରୋ ଓ ଜାହାଙ୍ଗିର—ଗୃଇଲଡ ଓ ଆଓରଙ୍ଗଜେବ—ଆଓରଙ୍ଗଜେବ ଓ ଫୋର୍ଟ ଉଇଲିୟମ—ହାମିଲ୍‌ଟନ ଓ ଫରକଶିୟର—ଆଲ୍ଲିବର୍ଦ୍ଦିଖାଁ ଓ ଇଂରାଜ—ସିରାଜୁଦ୍ଦୌଲ ଓ ଇଂରାଜ—ପଲାସି ଯୁଦ୍ଧ ଓ ବଙ୍ଗଳାରେ ଇଂରାଜ ରାଜ୍ୟସ୍ଥାପନ ।

୧୨- ଇଂରାଜ ସାମ୍ରାଜ୍ୟ—

ଇଂରାଜସାମ୍ରାଜ୍ୟର ପ୍ରସାର--କ୍ଲାଇବ, ଓ୍ୱେଲେସଲି, ଡେଲ-ହୌସୀ । ଇଂରାଜ ରାଜ୍ୟରେ ଶାସନପ୍ରବର୍ତ୍ତନ--କ୍ଲାଇବ, ଓ୍ୱାରେନହେଷ୍ଟିଂସ, କର୍ଣ୍ଣବାଲିସ, ବେଣ୍ଟିଙ୍କ, ଡେଲହୌସୀ, ରିପନ, କର୍ଜନ ।

ଇଂରାଜ ରାଜ୍ୟରେ ବୈଷୟିକ ଉନ୍ନତି -ବେଣ୍ଟିଙ୍କ, ଡେଲହୌସୀ, କର୍ଜନ ।

ଭାରତର ସଶସ୍ତ୍ର ଜାତୀୟ ଆନ୍ଦୋଳନ :—

(କ) ହାଇଦର ଆଲି, ଟିପୁ ଓ ମହୀସୁର—
ହାଇଦର ଆଲିଙ୍କ ମହରଟ୍ଟା ଓ ନିଜାମଙ୍କ ସଙ୍ଗେ ସମବାୟ ଗଠନ, ହାଇଦର ଓ ଟିପୁଙ୍କ ଫରାସୀମାନଙ୍କ ସଙ୍ଗେ ସମବାୟ ଗଠନ ।

(ଖ) ମହରଟ୍ଟା ବଂଶ—ମହାଦଜୀ ସିନ୍ଧିଆ ଓ ସାହଆଲମଙ୍କ ସମବାୟ, ସାଲବାଇ ସନ୍ଧି; ପେଶବା, ସିନ୍ଧିଆ, ଟିପୁ ଓ ଶାହ ଆଲମଙ୍କ ସମବାୟ ୧୭୯୪; ବେସିନ ସନ୍ଧି ଓ ପେଶବା, ସିନ୍ଧିଆ ଓ ଭୋନସ୍ଲାଙ୍କ ସମବାୟ (୧୮୦୩) ।

(ଗ) ରଣଜିତ ସିଂହ ଓ "ସବଲାଲ ହୋ ଯାୟଗା," ଅମୃତସର ସନ୍ଧି (୧୮୦୯), ଦଲୀପସିଂହ ଓ ଶିଖସେନା ଓ ପ୍ରଥମ ଶିଖସମର, ମୂଳରାଜ ଓ ଶିଖସେନା ଓ ଦ୍ୱିତୀୟ ଶିଖ ସମର ।

(ଘ) ଓଡ଼ିଶା ଆନ୍ଦୋଳନ—୧୮୦୩ ମୁକୁନ୍ଦଦେବ ଓ ମନ୍ତ୍ରୀ, ୧୮୧୭ ପାଇକ ଆନ୍ଦୋଳନ ଓ ଜଗବନ୍ଧୁ ବିଦ୍ୟାଧର, ଅନୁଗୁଳ ଓ ବାଙ୍କି ଆନ୍ଦୋଳନ ।

(ଙ) ୧୮୫୭ ର ସିପାହୀ ଯୁଦ୍ଧ—ବାହାଦୁର ସାହ, ନାନା ସାହେବ, ତାନ୍ତିଆଟୋପି, ଲକ୍ଷ୍ମୀବାଈ ।
ଓଡ଼ିଶା ଓ ସମ୍ବଲପୁରର ସୁରେନ୍ଦ୍ର ସାୟଙ୍କ ଆନ୍ଦୋଳନ ।
—ସମସ୍ତ ଜାତୀୟ ଆନ୍ଦୋଳନର ବିଫଳତାର କାରଣ ସମବେତ ଚେଷ୍ଟାର ଅଭାବ ।

ଇଂରାଜ ରାଜ୍ୟରେ ରାଜନୈତିକ ଅଗ୍ରଗତି—
କେନିଂ ଓ ଭାରତକାଉନ୍‌ସିଲ୍ ଆଇନ (୧୮୬୧),
ରିପନ ଓ ସ୍ଥାନୀୟ ସ୍ୱାୟତ୍ତଶାସନ, ମିଣ୍ଟୋମର୍ଲି ଶାସନସଂସ୍କାର,
ମଣ୍ଟେଗ୍ୟୁଚେମସଫୋର୍ଡ଼ ଶାସନସଂସ୍କାର ।
ଇଂରାଜରାଜ୍ୟରେ ସାମାଜିକ ଓ ଅର୍ଥନୈତିକ ଅଗ୍ରଗତି—ଜାହାଜ, ରେଳ, ଉଡ଼ାଜାହାଜ ଇତ୍ୟାଦି ।
ଭାରତର ଅହିଂସା ଜାତୀୟ ଆନ୍ଦୋଳନ—
ଭାରତୀୟ କଂଗ୍ରେସ—ଦାଦାଭାଇ ନାରୋଜୀ, ବାଲଗଙ୍ଗାଧର-ତିଲକ, ଗୋପାଳକୃଷ୍ଣ ଗୋଖଲେ, ଗାନ୍ଧି, ସୁଭାଷଚନ୍ଦ୍ର ବୋଷ । ପ୍ରଥମ ପୃଥିବୀସମର—ମଣ୍ଟେଗ୍ୟୁଚେମସଫୋର୍ଡ଼ ଶାସନସଂସ୍କାର, ଅସହଯୋଗ ଆନ୍ଦୋଳନ, ଆଇନଅମାନ୍ୟ ଓ ଲବଣସତ୍ୟାଗ୍ରହ, ଗୋଲଟେବୁଲ ବୈଠକ, ୧୯୩୫ ଭାରତଶାସନ ଆଇନ । ତୃତୀୟ ପୃଥିବୀ ସମର—ଭାରତଛାଡ଼ ଆନ୍ଦୋଳନ—ଭାରତର ସ୍ୱାଧୀନତା ।

୧୨- ଗଣତନ୍ତ୍ର ଭାରତ—
ଭାରତର ଶାସନ ବିଧାନ ।
ଶାସନର ଅଗ୍ରଗତି—ରାଜେନ୍ଦ୍ର ପ୍ରସାଦ ଓ ଜବାହର ଲାଲ ନେହେରୁ ।
ଗାନ୍ଧି ଓ ଅହିଂସାବାଦ—ଭାରତର ନିରସ୍ତ୍ର ଆନ୍ଦୋଳନର ପ୍ରଭାବ—ପରାଧୀନ ଦେଶମାନଙ୍କର ସ୍ୱାଧୀନତା—ଜାତିମାନଙ୍କର ଆତ୍ମନିୟନ୍ତ୍ରଣବାଦ—ବିଶ୍ୱସରକାର, ଅହିଂସାନୀତି ଓ ବିଶ୍ୱ-

ଶାନ୍ତି ପ୍ରଚେଷ୍ଟା । ପରମାଣୁଶକ୍ତି ଓ ବିଶ୍ୱ ମାନବିକତା—ଭାରତର ନୈତିକ ବଳ ।

ପାଠ୍ୟପୁସ୍ତକ—ପାଠ୍ୟ ନିର୍ଘଣ୍ଟର ସଫଳ ଶିକ୍ଷାଦାନ ନିମନ୍ତେ ପାଠ୍ୟ-ପୁସ୍ତକର ଉପାଦେୟତା, ଏବଂ ସହଜ ଭାଷାରେ ଓ ସରଳ ପ୍ରଣାଳୀରେ ବିଷୟ ବସ୍ତୁର ଅବତାରଣା ଅତ୍ୟାବଶ୍ୟକ, ଅତୀତ ଭାରତର ଗୌରବ ପ୍ରଖ୍ୟାପନ କରି କେତେକ ଐତିହାସିକ ସାହିତ୍ୟ ପୁସ୍ତକ ଲିଖିତ ହେବା ବାଞ୍ଛନୀୟ । ସେଥିରେ ଆବହମାନ କାଳରୁ ପରିବ୍ରାଜକମାନଙ୍କର ଲିଖିତ ବିବରଣୀ ରହିବା ଆବଶ୍ୟକ । ଇଂରାଜୀ ଓ ଓଡ଼ିଆ ଉଭୟ ଶିକ୍ଷାରେ ସେଗୁଡ଼ିକ ଅତିରିକ୍ତ ସାହିତ୍ୟ ପାଠ୍ୟ ରୂପେ ଶ୍ରେଣୀ-ମାନଙ୍କରେ ଶିକ୍ଷା ଦିଆଯିବା ଉଚିତ । କେତେକ ଘଟଣାର ବିବରଣ ଜାଣିବା ଇତିହାସ ଶିକ୍ଷାର ଲକ୍ଷ୍ୟ ନୁହେଁ, ଛାତ୍ରର ମନରେ ଜାତୀୟତା ଓ ଜାତିପ୍ରୀତିର ଜାଗରଣ ଆଣିବା ଇତିହାସଶିକ୍ଷାର ପ୍ରଧାନ କାର୍ଯ୍ୟ ଅଟେ ।



—ଗ୍ୟ—

# ପାଠ୍ୟ ଓ ପ୍ରଣାଳୀ

ଇତିହାସର ବିଷୟବସ୍ତୁ ଶିକ୍ଷା ଦେବା ନିମନ୍ତେ ବିଭିନ୍ନ ପ୍ରଣାଳୀରେ ସଜା ଯାଇଥାଏ ।

୧- ଐକକେନ୍ଦ୍ରିକ ପ୍ରଣାଳୀ (Concentric Method —

ପ୍ରତି ଗୋଟିଏ ବା ଦୁଇଟି ଶ୍ରେଣୀକୁ ଗୋଟିଏ ବିଭାଗ ବୋଲି ଧରି ପ୍ରତି ବିଭାଗରେ ସମଗ୍ର ଇତିହାସଟି ଥରେ ଶିକ୍ଷା ଦିଆଯାଏ । ବିଦ୍ୟାଳୟର ନିମ୍ନତମ ବିଭାଗରେ ସମଗ୍ର ଇତିହାସର ଆଦିମତମ ଯୁଗରୁ ଆଧୁନିକ ଯୁଗ ପର୍ଯ୍ୟନ୍ତ ଘଟଣାଗୁଡ଼ିକ ସହଜତମ ଓ ସୁବୋଧତମ ଆକାରରେ ଶିକ୍ଷା ଦିଆଯିବ । ତହିଁ ଉପରର ବିଭାଗରେ ଇତିହାସକୁ ଆଉ ଥରେ ପ୍ରଥମରୁ ମୂଳରୁ ଶେଷ ପର୍ଯ୍ୟନ୍ତ ଶିକ୍ଷା ଦିଆଯିବ, କିନ୍ତୁ ଏଥରେ ବିଷୟବସ୍ତୁକୁ ଟିକିଏ ଅଧିକ ବର୍ଦ୍ଧିତ ଓ ବିସ୍ତୃତ କରାଯିବ । ଛାତ୍ର କ୍ରମେ ଯେତିକି ଉଚ୍ଚ ଉଚ୍ଚ ବିଭାଗକୁ ଯାଉଥିବ, ବିଷୟବସ୍ତୁର ପରିସର ତଦନୁରୂପେ ଅଧିକ ଅଧିକ ବର୍ଦ୍ଧିତ ଓ ବିସ୍ତୃତ କରାଯାଉଥିବ । ଏହି ପ୍ରଣାଳୀକୁ ଐକକେନ୍ଦ୍ରିକ ପ୍ରଣାଳୀ କହନ୍ତି ।

ଏହି ପ୍ରଣାଳୀରେ ଛାତ୍ରର ମନୋବୃତ୍ତିର କ୍ରମବିକାଶ ଅନୁସାରେ ବିଷୟବସ୍ତୁକୁ କ୍ରମେ ଜଟିଳ ଓ କଠିନ କରିବାକୁ

ସୁବିଧା ହୁଏ ଏବଂ ଛାତ୍ର ପକ୍ଷରେ ଗ୍ରହଣ କରିବା ମଧ୍ୟ ସୁବିଧା-ଜନକ ହୁଏ । କିନ୍ତୁ ଏହି ପ୍ରଣାଳୀରେ ଗୋଟିଏ କଥାର ବାରମ୍ବାର ଆବୃତ୍ତି ହେତୁ ବିଷୟର ନୂତନତା ରହେ ନାହିଁ, ଏବଂ ଛାତ୍ରର ଆଗ୍ରହ ଊଣା ପଡ଼ିଯାଏ ।

୨- ସମୟାନୁକ୍ରମ ପ୍ରଣାଳୀ Chronological Method)—

ସମୟର ଅନୁକ୍ରମ ବା ପୂର୍ବାପର ସଂଗତି ଅନୁସାରେ ଇତିହାସର ଗୋଟିଏ ବା ଅଧିକ ବିଭାଗ ଗୋଟିଏ ଶ୍ରେଣୀରେ ଶିକ୍ଷା ଦେବାକୁ ସମୟାନୁକ୍ରମ ପ୍ରଣାଳୀ କହନ୍ତି । ଐକକେନ୍ଦ୍ରିକ ପ୍ରଣାଳୀରେ ପ୍ରତି ଦୁଇ ବା ତିନି ଶ୍ରେଣୀରେ ସମଗ୍ର ଇତିହାସକୁ ଥରେ ପୂର୍ଣ୍ଣ ରୂପେ ଶିକ୍ଷା ଦେବାକୁ ହୁଏ, କିନ୍ତୁ ସମୟାନୁକ୍ରମ ପ୍ରଣାଳୀରେ ଶ୍ରେଣୀର ସଂଖ୍ୟା ବଢ଼ିଯାଏ । ମଧ୍ୟ ବିଦ୍ୟାଳୟର ଗୃହ ଶ୍ରେଣୀକୁ ଗୋଟିଏ ବିଭାଗ ଧରି ଚତୁର୍ଥ ବା ଅଷ୍ଟମ ଶ୍ରେଣୀରେ ବୈଦିକ, ବୌଦ୍ଧ ଓ ହିନ୍ଦୁ ଯୁଗର, ପଞ୍ଚମ ବା ନବମ ଶ୍ରେଣୀରେ ତୁରସ୍କ-ଆଫଗାନ ଯୁଗର, ଷଷ୍ଠ ବା ଦଶମ ଶ୍ରେଣୀରେ ମୋଗଲଯୁଗର ଏବଂ ସପ୍ତମ ବା ଏକାଦଶ ଶ୍ରେଣୀରେ ଇଂରାଜ ଯୁଗର ଓ ସ୍ୱାଧୀନ ଭାରତ ଯୁଗର ଇତିହାସ ଏହି ପ୍ରଣାଳୀ ଅନୁସାରେ ଶିକ୍ଷା ଦିଆଯାଉ । ଚତୁର୍ଥ ଓ ସପ୍ତମ ଶ୍ରେଣୀର ଛାତ୍ରର କିଂବା ଅଷ୍ଟମ ଓ ଏକାଦଶ ଶ୍ରେଣୀର ଛାତ୍ରର ମାନସିକ ପରିପକ୍ୱତା ବା ବିକାଶ ସମାନ ନ ଥାଏ, କିନ୍ତୁ ଏହି ପ୍ରଣାଳୀରେ ଉଭୟ ଶ୍ରେଣୀରେ ସମାନ ପ୍ରକାର ବିଷୟବସ୍ତୁର ଅବତାରଣା କରି ଯାଉଥିବାରୁ ଚତୁର୍ଥ ବା ଅଷ୍ଟମ ଶ୍ରେଣୀର ଛାତ୍ରମାନେ ଶିକ୍ଷାଦାନକୁ ଉପଯୁକ୍ତ ରୂପେ ଗ୍ରହଣ କରିପାରନ୍ତି ନାହିଁ ।

ପୁଣି ବିଷୟବସ୍ତୁର ବାରମ୍ବାର ଆବୃତ୍ତି ଅଭାବରୁ ଛାତ୍ର ନିମ୍ନତର ଶ୍ରେଣୀରେ ଯାହା ପଢ଼ିଥାଏ, ଉଚ୍ଚତମ ଶ୍ରେଣୀକୁ ଗଲାବେଳେ ତାହା ଭୁଲି ଯାଇଥାଏ ।

ବାସ୍ତବତଃ ସମୟାନୁକ୍ରମ ପ୍ରଣାଳୀ ଓ ଐକକେନ୍ଦ୍ରିକ ପ୍ରଣାଳୀ ପରସ୍ପରାପେକ୍ଷୀ । ଆମ୍ଭେମାନେ ପ୍ରାଥମିକ ବିଦ୍ୟାଳୟରେ ଯାହା ଥରେ ଶିକ୍ଷା ଦେଉଁ, ମଧ୍ୟବିଦ୍ୟାଳୟ ଓ ଉଚ୍ଚ ବିଦ୍ୟାଳୟରେ ଐକକେନ୍ଦ୍ରିକ ପ୍ରଣାଳୀରେ ତାହାର ପୁନରାବୃତ୍ତି କରି ଆଉ ଥରେ କେଉଁଠାଏ ଶିକ୍ଷା ଦେଉଁ । ଶିକ୍ଷାଦାନରେ ସର୍ବଦା ଓ ସବୁ ପ୍ରଣାଳୀରେ ଆମ୍ଭେମାନେ ସମୟାନୁକ୍ରମ ପ୍ରତି ଦୃଷ୍ଟି ଦେଇଥାଉଁ ।

କେତେକ ଛାତ୍ର ପ୍ରାଥମିକ ବିଦ୍ୟାଳୟର ଶିକ୍ଷା ପରେ ଶିକ୍ଷା ସାଙ୍ଗ କରୁଥିବାରୁ ଆମ୍ଭେମାନେ ଐକକେନ୍ଦ୍ରିକ ପ୍ରଣାଳୀରେ ଇତିହାସ ଶିକ୍ଷା ଦେଇଥାଉଁ ଏବଂ ସାଧାରଣତଃ ପ୍ରାଥମିକ ବିଦ୍ୟାଳୟରେ ଅନ୍ତତଃ ଥରେ, ମଧ୍ୟବିଦ୍ୟାଳୟରେ ଅନ୍ତତଃ ଆଉ ଥରେ ଏବଂ ଉଚ୍ଚ ବିଦ୍ୟାଳୟରେ ଅନ୍ତତଃ ପୁଣି ସମଗ୍ର ଇତିହାସର ବିଷୟବସ୍ତୁ ଶିକ୍ଷା ଦେଉଁ ।

ଛାତ୍ରର ଦ୍ୱାଦଶ ବର୍ଷ ଶିକ୍ଷାକାଳକୁ ଏକ ବୋଲି ଧରି ବିଷୟବସ୍ତୁ ବା ସିଲାବସ ପରିକଳ୍ପନା କରିବା ଆମ୍ଭମାନଙ୍କ ପକ୍ଷରେ ସମ୍ଭବ ନୁହେ । ପୁଣି ଏକାଦଶ ଶ୍ରେଣୀର ଛାତ୍ର ପକ୍ଷରେ ଯାହା ଉପଯୋଗୀ ବିଷୟବସ୍ତୁ ହେବ, ଚତୁର୍ଥ ଶ୍ରେଣୀର ଛାତ୍ର ପକ୍ଷରେ ତାହା କଦାପି ଉପଯୋଗୀ ହୋଇ-ପାରିବ ନାହିଁ । ତେଣୁ ଐକକେନ୍ଦ୍ରିକ ପ୍ରଣାଳୀକୁ ଉପେକ୍ଷା

କରି କେବଳ ସମଯ୍ୟାନୁକ୍ରମ ପ୍ରଣାଳୀରେ ଆମ୍ଭେମାନେ ସମଗ୍ର ସ୍କୁଲ ଶିକ୍ଷାକାଳ ସକାଶେ ପାଠ୍ୟବସ୍ତୁର ପରିକଳ୍ପନା କରି ପାରିବା ନାହିଁ ।

ପାଟୀଗଣିତରେ ଯେପରି ସରଳ ସୂତ୍ର ସୂତ୍ର ଶିକ୍ଷା ନିମ୍ନତମ ଶ୍ରେଣୀରେ ଦେଇ କ୍ରମେ ଉଚ୍ଚତର ଶ୍ରେଣୀମାନଙ୍କରେ କଠିନତର ସୂତ୍ର ଶିକ୍ଷା ଦିଆଯାଏ ଏବଂ କଠିନତର ବିଷୟର ଆଲୋଚନା ବେଳେ ନିମ୍ନତର ଶ୍ରେଣୀରେ ପଢ଼ିଥିବା ବିଷୟର ତା' ମନକୁ ଆବୃତ୍ତି କରାଇ ଯାଉଥାଏ ଇତିହାସ ଅଧ୍ୟାପନାରେ ପରସ୍ପର ସମ୍ପର୍କ ଅଭାବରୁ ସେପରି ହୋଇପାରିବ ନାହିଁ ।

ସମଯ୍ୟାନୁକ୍ରମର ବ୍ୟାଖ୍ୟା ହେଉଅଛି ଯେ ଆମ୍ଭେମାନେ ଘଟନାବଳୀର ପୂର୍ବାପରତା ବା ଅନୁକ୍ରମ ଅନୁସାରେ ଗୋଟିଏ ବଂଶର ବା ଜଣେ ରାଜାର କିମ୍ବା ସ୍ଥାନେ ସ୍ଥାନେ ଗୋଟିଏ ଯୁଗର ସମଗ୍ର ଇତିହାସ ପ୍ରଥମେ ଶିକ୍ଷା ଦେଇ ସାରିଲେ, ପରବର୍ତ୍ତୀ ଇତିହାସ ତା' ପରେ ଶିକ୍ଷା ଦେବାକୁ ଆରମ୍ଭ କରୁଁ । ଆକବରଙ୍କ ରାଜତ୍ୱର ସମସ୍ତ କଥା ଶିକ୍ଷା ଦେଲା ପରେ ଆମ୍ଭେମାନେ ଜାହାଙ୍ଗିରଙ୍କ ରାଜତ୍ୱ ଆରମ୍ଭ କରୁଁ । ସମଯ୍ୟାନୁକ୍ରମ ପ୍ରଣାଳୀର ବିପରୀତ ପ୍ରଣାଳୀର ନାମ ବିଷୟାନୁକ୍ରମ ପ୍ରଣାଳୀ । ବିଷୟାନୁକ୍ରମ ପ୍ରଣାଳୀରେ ରାଜା, ବଂଶ ବା ଯୁଗକୁ ଉପେକ୍ଷା କରି, ଗୋଟିଏ ବିଷୟକୁ ଲକ୍ଷ୍ୟ କରି ଶିକ୍ଷା ଦିଆଯାଏ । "ମୋଗଲ ସାମ୍ରାଜ୍ୟର ପ୍ରସାର"କୁ ଗୋଟିଏ ବିଷୟ

ବୋଲି ମନେ କରି ବାବରଙ୍କଠାରୁ ଆରମ୍ଭ କରି ଆଉରଙ୍ଗ-ଜେବଙ୍କ ପର୍ଯ୍ୟନ୍ତ ମୋଗଲ ସାମ୍ରାଜ୍ୟ କ୍ରମେ କିପରି ବିସ୍ତୃତ ହେଲା, ତାହାହିଁ ଶିକ୍ଷା ଦିଆ ଯାଇଥାଏ ।

୩- ବିଷୟାନୁକ୍ରମ ପ୍ରଣାଳୀ (Topical Method)—

ବିଷୟାନୁକ୍ରମ ପ୍ରଣାଳୀରେ କାଳ, ରାଜତ୍ୱ ବା ଯୁଗ ପ୍ରତି ଲକ୍ଷ୍ୟ ରଖାଯାଏ ନାହିଁ । ଆବହମାନ କାଳରୁ ଆଜି ପର୍ଯ୍ୟନ୍ତ ଗୋଟିଏ ବିଷୟର ଇତିହାସ ମଧ୍ୟ ଶିକ୍ଷାର ବସ୍ତୁ ରୂପେ ଗ୍ରହଣ କରା ଯାଇପାରିବ । ଭାରତରେ ଧର୍ମ, ଭାରତରେ ଶିଳ୍ପ, ଭାରତର ବାଣିଜ୍ୟ ପ୍ରଭୃତି ଯେକୌଣସି ଗୋଟିଏ ବିଷୟ ନେଇ ଆମ୍ଭେମାନେ ସେହି ବିଷୟର ପୂର୍ଣ୍ଣ ବିବରଣୀ ଛାତ୍ରମାନଙ୍କୁ ଶିକ୍ଷା ଦେଇପାରିବା । ସେହିପରି ମୋଗଲବଂଶର ଦାକ୍ଷିଣାତ୍ୟ-ନୀତି, ଶିଖନୀତି, ରାଜପୁତ୍ନୀତି, ଅଥବା ମୋଗଲଶିଳ୍ପ, ମୋଗଲ ରାଜସ୍ୱବନ୍ଦୋବସ୍ତ, କିମ୍ବା ଇଂରାଜ ଅମଳରେ ଭାରତର ଶିକ୍ଷା ପ୍ରଭୃତି ମଧ୍ୟ ଶିକ୍ଷା ଦେଇପାରିବା ।

ବିଷୟାନୁକ୍ରମ ଏକ ଉତ୍କୃଷ୍ଟ ଶିକ୍ଷାଦାନ ପ୍ରଣାଳୀ । ସେଥିରେ ବିଷୟ ସମ୍ବନ୍ଧରେ ଛାତ୍ରର ସ୍ପଷ୍ଟ ଓ ପୁଙ୍ଖାନୁପୁଙ୍ଖ ଧାରଣା ଜନ୍ମେ । କିନ୍ତୁ ଏଥିରେ ସମୟର ଧାରଣାରେ ଛାତ୍ରର ମନରେ ବିଶୃଙ୍ଖଳା ଘଟେ । ସେହି ବିଷୟକ ଘଟନା ଘଟୁଥିବା ବେଳେ, ରାଜ୍ୟରେ ଅନ୍ୟ ଆନୁସଙ୍ଗିକ କି ଘଟନା ଘଟୁଥିଲା, ସେସମ୍ବନ୍ଧରେ ମଧ୍ୟ ଛାତ୍ରର ମନରେ ବିଶୃଙ୍ଖଳା ଦେଖାଯାଏ । ସମୟର ଦୀର୍ଘତା ହେତୁ ଛାତ୍ର ଠିକ୍ ରୂପେ ବିଷୟର ଧାରଣା କରିପାରେ ନାହିଁ । ଛାତ୍ର ମନୋଜଗତରେ, ସେ ଯେପରି ଦୀନକ

ମଧ୍ୟରେ ବିଷୟଟି ଶିଖିନେଲେ, ଘଟଣାଟି ମଧ୍ୟ ସେହିପରି ଅଳ୍ପ ସମୟ ବ୍ୟାପିଥିବ, କିଂବା ସେହି ଘଟଣା ଘଟୁଥିବା ବେଳେ ଅନ୍ୟ ସମସ୍ତ ଘଟଣା ଅବଚ୍ଛିନ୍ନ ରହିଥିବ ।

୪. ଅଗ୍ରଗାମୀ ପ୍ରଣାଳୀ (Progressive Method)—

କୌଣସି ଦେଶର ଇତିହାସ ପଢ଼ାଇବାକୁ ହେଲେ, ଆମ୍ଭେମାନେ ସାଧାରଣତଃ ତହିଁର ପ୍ରାଚୀନ ଅତୀତରୁ ଆରମ୍ଭ କରି କ୍ରମେ ବର୍ତ୍ତମାନକୁ ଅଗ୍ରସର ହେଉଁ । ଏହାକୁ ଅଗ୍ରଗାମୀ ପ୍ରଣାଳୀ କହନ୍ତି । ଏଥିରେ ଛାତ୍ରକୁ ବିଷୟର କ୍ରମିକ ବିବର୍ତ୍ତନ ବା ବିକାଶ ଶିକ୍ଷା କରିବାକୁ ସୁବିଧା ହୁଏ ଏବଂ ସେ ବିଷୟଟି ସହଜରେ ବୁଝିପାରେ ।

୫. ପଶ୍ଚାଦ୍‌ଗାମୀ ପ୍ରଣାଳୀ (Regressive Method)—

ସାଧାରଣତଃ କୌଣସି ବିଷୟ (topic) କୁ ଶିକ୍ଷଣୀୟ ବସ୍ତୁ ରୂପେ ଗ୍ରହଣ କରି, ଛାତ୍ରର ସେହି ବିଷୟକ ଅନୁଭୂତି ଓ ଲବ୍ଧ ଜ୍ଞାନକୁ ଭିତ୍ତି କରି, ତାକୁ ପ୍ରଥମେ ବର୍ତ୍ତମାନ ଇତିହାସ ସମ୍ବନ୍ଧରେ ଧାରଣା ଦେଇ କ୍ରମେ କ୍ରମେ ଅତୀତ ଆଡ଼କୁ ଧୀରେ ଧୀରେ ଅଗ୍ରସର ହେଉଁ । ସର୍ବଶେଷରେ ବିଷୟର ପ୍ରାଚୀନତମ ଇତିହାସ ଛାତ୍ରକୁ ଶିକ୍ଷା ଦିଆଯାଏ । ଏହା ଛାତ୍ର ପକ୍ଷରେ ମନୋବୃତ୍ତି ବିକାଶ ଓ ମସ୍ତିଷ୍କ ଚାଳନା ପାଇଁ ଉପଯୁକ୍ତ ପ୍ରଣାଳୀ; ଏବଂ ବିଶ୍ଳେଷଣ ପ୍ରଣାଳୀ (Analytical Method) ହୋଇଥିବାରୁ ଛାତ୍ର ଏହି ପ୍ରଣାଳୀରେ ଯାହା କିଛି ଶିକ୍ଷା କରେ, ତାହା ଦୃଢ଼ ଓ ଦୀର୍ଘସ୍ଥାୟୀ ଜ୍ଞାନ ରୂପେ ତାର ମନେରହେ । ଏହା ବର୍ତ୍ତମାନରୁ ଅତୀତକୁ ଏବଂ ଜ୍ଞାତରୁ

ଅଙ୍କାତକୁ ଅଗ୍ରସର ହେଉଥିବାରୁ କୋମଳମତି ଛାତ୍ରମାନଙ୍କ ପକ୍ଷରେ ଉପଯୋଗୀ ଓ ସ୍ୱାଭାବିକ ପ୍ରଣାଳୀ ଏବଂ ମନୋ-ବିଜ୍ଞାନ ସମ୍ମତ ପ୍ରଣାଳୀ ଅଟେ ।

ତେବେ ଇତିହାସର ଘଟଣାଗୁଡ଼ିକ ପରସ୍ପର ବିଚ୍ଛିନ୍ନ ଓ ଅସଂବଦ୍ଧ ରହିଥାଏ । ବିଶେଷତଃ ଭାରତର ଇତିହାସ ସମ୍ବନ୍ଧରେ ଆମ୍ଭମାନଙ୍କ ଜ୍ଞାନ ଏପରି ଅସମ୍ପୂର୍ଣ୍ଣ ଯେ ଏହି ପ୍ରଣାଳୀରେ ଭାରତର ଇତିହାସ ଶିକ୍ଷା ଦେବା ଦୁରୂହ ଏବଂ ଏକପ୍ରକାର ଅସମ୍ଭବ । ତେବେ ବେଳେବେଳେ ଏହି ପ୍ରଣାଳୀରେ କେତେକ ବିଷୟ ଶିକ୍ଷା ଦେବା ଆବଶ୍ୟକ । ସେଥିରେ ଛାତ୍ରର ଐତିହାସିକ ମନୋବୃତ୍ତିର ବିକାଶ ହୁଏ ଏବଂ ଇତିହାସ ପ୍ରତି ମମତା ଜନ୍ମେ । ଶିକ୍ଷକ ପ୍ରତି ପାଠର ଉପକ୍ରମ ବେଳେ ବର୍ତ୍ତମାନ ସମ୍ପର୍କ ପ୍ରଥମେ ଉତ୍‌ଥାପନ କରି ଛାତ୍ରର ବିଷୟ ପ୍ରତି ଖୁବ୍ ପରିଚୟ ଓ କୌତୂହଳ ଜନ୍ମାଇ ପାରିଲେ ଏବଂ ଶିକ୍ଷା-ଦାନର ବିଷୟବସ୍ତୁ ସହିତ ଛାତ୍ରର ଲବ୍ଧ ଜ୍ଞାନକୁ ସଂଯୋଗ କରି ପାରିଲେ, ଅନ୍ତତଃ ଶିକ୍ଷାଦାନ ବା ପାଠଟି ଛାତ୍ର ପକ୍ଷରେ ଚିତ୍ତାକର୍ଷକ ହୁଏ ।

ସ୍କୁଲରେ ଏହି ସମସ୍ତ ପ୍ରଣାଳୀ ଅଙ୍ଗାଙ୍ଗୀ ବା ସମସଙ୍ଗତା-ରହିତ ନୁହନ୍ତି । ପ୍ରତ୍ୟେକ ସ୍କୁଲରେ ସମସ୍ତ ପ୍ରଣାଳୀ ପ୍ରୟୋଗ କରି ହେବ ନାହିଁ । କୌଣସି ଗୋଟିଏ ପ୍ରଣାଳୀରେ ସବୁ ଶିକ୍ଷାଦାନ କାର୍ଯ୍ୟ ଚଳିପାରିବ ନାହିଁ । ସାଧାରଣତଃ ପାଠ୍ୟ ଓ ପାଠ୍ୟପୁସ୍ତକ ନିର୍ଣ୍ଣୟ କରିବା ବେଳେ ଏବଂ ଛାତ୍ରମାନଙ୍କ ମାନସିକ ବିକାଶ ବିଚାର କରିବା ବେଳେ ଆମ୍ଭେମାନେ ଐକକେନ୍ଦ୍ରିକ ପ୍ରଣାଳୀରେ ତାହା ଅବଧାରଣ କରିଥାଉଁ । ପାଠ ବା ବିଷୟବସ୍ତୁ ସମଦ୍ୱାନୁକ୍ରମ

ପ୍ରଣାଳୀରେ ଶିକ୍ଷା ଦେଇଥାଉଁ । ଉଚ୍ଚତର ଶ୍ରେଣୀମାନଙ୍କରେ ଶିକ୍ଷା ଦେବା ବେଳେ ବିଷୟାନୁକ୍ରମ ପ୍ରଣାଳୀରେ ପାଠ ପରିକଳ୍ପନା କଲେ ସର୍ବାଧିକ ଲାଭ ମିଳିଥାଏ ।

**ବିଭିନ୍ନ ବିଷୟର ସମନ୍ୱୟ(Correlation):—**ଇତିହାସ ଅଧ୍ୟାପନାରେ ଇତିହାସ, ଭୂଗୋଳ, ସାହିତ୍ୟ ପ୍ରଭୃତି ବିଭିନ୍ନ ବିଷୟ ମଧ୍ୟରେ ସମନ୍ୱୟ ରଖି ଶିକ୍ଷାଦାନ ଦେବା ଗୋଟିଏ ପ୍ରଧାନ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ । ଏପ୍ରକାର ଶିକ୍ଷାଦାନଦ୍ୱାରା ବିଭିନ୍ନ ପ୍ରତ୍ୟେକ ବିଷୟରେ ଛାତ୍ରମାନଙ୍କର ଜ୍ଞାନର ଉନ୍ନତି ସାଧନ ଘଟେ ଏବଂ ଗୋଟିଏ ବିଷୟର ଲବ୍ଧ ଜ୍ଞାନ ଅନ୍ୟ ବିଷୟର ହୃଦ୍‌ବୋଧ କରଣରେ ସାହାଯ୍ୟ କରେ । ବିଷୟ-ମାନଙ୍କର ପରସ୍ପର ସମନ୍ୱୟ ରକ୍ଷା ସକାଶେ ଜଣେ ଶିକ୍ଷକ ଗୋଟାଏ ଶ୍ରେଣୀରେ ଯେତେଦୂର ସମ୍ଭବ ସମସ୍ତ ବିଷୟ ଶିକ୍ଷା ଦେବା ଉଚିତ । କିନ୍ତୁ ଆଜିକାଲି ବିଭିନ୍ନ ବିଷୟରେ ପଟୁ ଶିକ୍ଷକ ଗୋଟିଏ ବିଷୟର ଅଧ୍ୟାପନା କରନ୍ତି ନାହିଁ ଏବଂ ଜଣେ ଶିକ୍ଷକ ଦୁଇରୁ ଅଧିକ ବିଷୟ ଶିକ୍ଷା ଦେବାରେ ସମର୍ଥ ନୁହନ୍ତି । ଏପରି ଅବସ୍ଥାରେ ବିଷୟ ବିଷୟ ମଧ୍ୟରେ କେତେଦୂର ଓ କିପ୍ରକାରେ ସମନ୍ୱୟ ରକ୍ଷା କରାଯାଇ ପାରିବ, ତାହାହିଁ କେବଳ ବିଚାର୍ଯ୍ୟ ।

ଇତିହାସ, ଭୂଗୋଳ ଓ ସାହିତ୍ୟ ମଧ୍ୟରେ ସମନ୍ୱୟ ରକ୍ଷା ଓ ପରସ୍ପର ଆପେକ୍ଷିକ ଶିକ୍ଷାଦାନ ଅଧିକ ସମ୍ଭବ ହୁଏ । ଭାରତକୁ ଆର୍ଯ୍ୟଆଗମନ ଶିକ୍ଷା ଦେବା ବେଳେ ମେରୁପ୍ରଦେଶର ଭୂଗୋଳ, ମଧ୍ୟ ଏସିଆର ଭୂଗୋଳ, ଭାରତର ଉତ୍ତରପଶ୍ଚିମ ସୀମାନ୍ତର ପର୍ବତମାଳ ଓ ଗିରିସଙ୍କଟର କଥା ଶ୍ରେଣୀରେ ଶିକ୍ଷା ଦେଲେ, ଛାତ୍ର-ମାନେ ସହଜରେ ଆର୍ଯ୍ୟ ଆଗମନ କଥା ବୁଝିପାରନ୍ତି । ବେଦର

ଅନେକଗ୍ରନ୍ଥିଏ ଶ୍ଳୋକ ଆର୍ଯ୍ୟମାନଙ୍କର ସମାଜ, ଧର୍ମ, ଆଚାର-ବ୍ୟବହାର, ରୀତିନୀତି, ଶିକ୍ଷା, ସଭ୍ୟତା ଓ ସଂସ୍କୃତି କଥା ପ୍ରଖ୍ୟାପନ କରେ । ଶ୍ରେଣୀରେ ସେସବୁର ଅବତାରଣା କଲେ, ଆର୍ଯ୍ୟମାନଙ୍କ ସମ୍ବନ୍ଧରେ ଛାତ୍ରମାନଙ୍କର ପରିଷ୍କୃତ ଓ ସ୍ଥାୟୀ ଧାରଣା ହୁଏ ଏବଂ ଇତିହାସର ବିଷୟଜ୍ଞାନ ସହଜରେ ସେମାନଙ୍କ ମନରେ ଦୃଢ଼ ହୁଏ । ମୋଗଲ୍‌ଯୁଗର ଇତିହାସ ଶିକ୍ଷା ଦେବା ବେଳେ ବାବର, ଜାହାଙ୍ଗିରଙ୍କ ଆତ୍ମଚରିତ ତଥା ଆବୁଲ୍‌ଫାଜଲ୍ ଆଦି ଲେଖକଙ୍କ ଲେଖାର ଅନୁବାଦ ଓ ୟୁରୋପୀୟ ତଥା ଅନ୍ୟାନ୍ୟ ପର୍ଯ୍ୟଟକ-ମାନଙ୍କର ବିବରଣୀରୁ ଅନେକ କଥାର ଅବତାରଣା କରି ଯାଇ ପାରିବ ।

କିନ୍ତୁ ପୂର୍ବୋକ୍ତ ପ୍ରକାର ସାହିତ୍ୟର ସଂଖ୍ୟା ଅତି ଅଳ୍ପ । ଅନେକ ସ୍ଥଳରେ ଇତିହାସ ଶିକ୍ଷକଙ୍କ ବିଷୟ ସଙ୍ଗେ ସେରୂପ ସମ୍ପର୍କ ସ୍ଥାପନ କଠିନ ହୁଏ । ବିଶେଷତଃ ହିନ୍ଦୁଯୁଗର ଇତିହାସ ଅନ୍ୟ ଦୁଇ ଯୁଗଠାରୁ ପ୍ରାଚୀନତର ଓ ଦୁର୍ବୋଧତର ହେଲେ ମଧ୍ୟ ସେହି ଯୁଗ ସମ୍ବନ୍ଧରେ ଐତିହାସିକ ସାହିତ୍ୟ ଅଧିକ ବିରଳ । ଏଥିଲାଗି ଇତିହାସ ଶିକ୍ଷକ ବିଫଳ ମନୋରଥ ହୋଇଥାନ୍ତି ।

ଦ୍ୱିତୀୟତଃ, ସେପ୍ରକାର ଶିକ୍ଷାଦାନ ନିମନ୍ତେ ଶିକ୍ଷକଙ୍କୁ ସଂପୃକ୍ତ ସାହିତ୍ୟ ଖୋଜିବାକୁ ହୁଏ । ବିଭିନ୍ନ ଭାଷାରେ ଥିବା ସାହିତ୍ୟକୁ ଛାତ୍ରମାନଙ୍କ ବୁଝିବା ଭଳି ଭାଷାରେ ଅନୁବାଦ କରିବାକୁ ହୁଏ । ପ୍ରତ୍ୟେକ ଛାତ୍ର ହାତରେ ସାହିତ୍ୟର ବିଷୟ ଦେବାକୁ ହେଲେ, ଉଦ୍ଧୃତାଂଶମାନଙ୍କର ମୁଦ୍ରିତ ବା ଅନ୍ୟପ୍ରକାର ପ୍ରତିଲିପି ଦେବାକୁ ହୁଏ । ଏଥିସକାଶେ ଖର୍ଚ୍ଚ ଓ ପରିଶ୍ରମ କରିବାକୁ ପଡ଼େ । ଶିକ୍ଷକ-

ମାନେ ସେଥିଲାଗି ସେଥିରୁ ନିବୃତ୍ତ ହୁଅନ୍ତି । ସରକାର ଓ ବିଦ୍ୟାଳୟ ଏଥିସକାଶେ କିଛି ବ୍ୟବସ୍ଥା ନ କଲେ, ଏ କାର୍ଯ୍ୟ ସମ୍ଭବ ନୁହେଁ । ପ୍ରତି ବିଦ୍ୟାଳୟର ଲାଇବ୍ରେରିରେ ଏପ୍ରକାର ପୁସ୍ତକ ରହିବା ବାଞ୍ଛନୀୟ । ଆବଶ୍ୟକ ଐତିହାସିକ ଅଂଶବିଶେଷ ମୁଦ୍ରିତ ବା ଅନ୍ୟ ଆକାରରେ ବିଦ୍ୟାଳୟର ଐତିହାସିକ ମ୍ୟୁଜିୟମରେ ସଞ୍ଚିତ ହେବା ବିଧେୟ ।

ତୃତୀୟତଃ, ଇତିହାସ, ଭୂଗୋଳ, ସାହିତ୍ୟ ପ୍ରଭୃତି ବିଭିନ୍ନ ବିଷୟର ଶିକ୍ଷକମାନଙ୍କ ମଧ୍ୟରେ ପରସ୍ପର ସହଯୋଗ ଓ ଆଲୋଚନା ହେବା ଅତି ଆବଶ୍ୟକ । ବିଭିନ୍ନ ବିଷୟର ଓ ବିଭିନ୍ନ ଶ୍ରେଣୀର ଶିକ୍ଷକମାନେ ନିଜ ନିଜ ଶ୍ରେଣୀରେ ଓ ବିଷୟରେ ଯାହା ପାଠ୍ୟକ୍ରମ ଶିକ୍ଷା ଦିଅନ୍ତି, ତାହା ଶ୍ରେଣୀର ଅନ୍ୟ ଶିକ୍ଷକମାନେ ମଧ୍ୟ ଜାଣିବା ଦରକାର । ବିଭିନ୍ନ ବିଷୟରେ କିପ୍ରକାରେ ସମନ୍ୱୟ ରକ୍ଷା କରାଯାଇ ପାରିବ, ସେକଥା ଶିକ୍ଷକ ସମିତିରେ ଓ ଶିକ୍ଷକମାନଙ୍କ ମଧ୍ୟରେ ଆଲୋଚନା ହେବା ଉଚିତ । ବାର୍ଷିକ ପାଠ୍ୟକ୍ରମ ପ୍ରଣୟନ କରିବା ବେଳେ ବିଭିନ୍ନ ବିଷୟର ଶିକ୍ଷକ ଏକାଠି ବସି ଓ ସବୁ କଥା ଭଲ ରୂପେ ଆଲୋଚନା କରି ପରସ୍ପର ସହଯୋଗରେ ନିଜ ନିଜ ପାଠ୍ୟକ୍ରମ ପ୍ରସ୍ତୁତ କରିବା ଅତି ବାଞ୍ଛନୀୟ ଓ ଆବଶ୍ୟକ । ପୁଣି ମଝେ ମଝେ ଆହୁରି ଅଧିକ ସାମୟିକ ଆଲୋଚନା ନିମନ୍ତେ ଏକାଠି ବସି ଶିକ୍ଷାଦାନର ସମନ୍ୱୟ ବିଧାନ କରିବାକୁ ଚେଷ୍ଟା କରିବା ଉଚିତ ।

ବିଶେଷତଃ ଇତିହାସ ଶିକ୍ଷାଦାନରେ ଭୂଗୋଳ ଜ୍ଞାନ ସଙ୍ଗେ ସମନ୍ୱୟ ରଖିବା ଇତିହାସ ଶିକ୍ଷକଙ୍କ ପକ୍ଷରେ ଅତି ଆବଶ୍ୟକ ହୁଏ

ଏବଂ ଭୌଗୋଳିକ ଜ୍ଞାନ ବ୍ୟତୀତ ସ୍ଥାନେ ସ୍ଥାନେ ଇତିହାସ ପଢ଼ାଇବା ନିତାନ୍ତ ଅସମ୍ଭବ ହୋଇ ପଡ଼େ । ଏଥିସକାଶେ ଇତିହାସ ଶିକ୍ଷକ ଭୂଗୋଳ ଶିକ୍ଷକଙ୍କ ପରାମର୍ଶ ଓ ସାହାଯ୍ୟ ନେବା ଅତ୍ୟନ୍ତ ଆବଶ୍ୟକ । ଛାତ୍ରମାନଙ୍କଦ୍ୱାରା ମାନଚିତ୍ର, ଛବି ପ୍ରଭୃତି ତିଆରି କରାଇ ଏବଂ ନିଜେ ଉତ୍କୃଷ୍ଟ ଧରଣର ଶିକ୍ଷାଦାନ ଉପକରଣ ପ୍ରସ୍ତୁତ କରି ଭୂଗୋଳ ଓ ଡ୍ରଇଂ ଶିକ୍ଷକମାନେ ଇତିହାସ ଶିକ୍ଷକଙ୍କୁ ତାଙ୍କ ଅଧ୍ୟାପନାରେ ବିଶେଷ ସାହାଯ୍ୟ କରିପାରିବେ । ଐତିହାସିକ ବିଷୟବସ୍ତୁ ଉପରେ ଛାତ୍ରମାନଙ୍କଦ୍ୱାରା ସାହିତ୍ୟିକ ପ୍ରବନ୍ଧ, ଗଳ୍ପ, ନାଟିକା ପ୍ରଭୃତି ଲେଖାଇ ସାହିତ୍ୟ ଶିକ୍ଷକ ମଧ୍ୟ ଇତିହାସର ଅଧ୍ୟାପନାରେ ସାହାଯ୍ୟ କରି ପାରିବେ । ସାହିତ୍ୟିକ ସେପ୍ରକାର ନିବନ୍ଧରେ ଇତିହାସ ଶିକ୍ଷକ ମଧ୍ୟ ସାହିତ୍ୟ ଶିକ୍ଷକଙ୍କୁ ସୂଚନା ଦେଇ ପ୍ରବନ୍ଧର ଉନ୍ନତି କରାଇବେ । ଇତିହାସ ଓ ବିଜ୍ଞାନ ମଧ୍ୟରେ ମଧ୍ୟ ଏପ୍ରକାର ସମନ୍ୱୟ ରକ୍ଷା କରାଯାଇ ପାରିବ । ବୈଜ୍ଞାନିକ ଆବିଷ୍କାରକ-ମାନଙ୍କର ଜୀବନୀ ଓ ଆବିଷ୍କାର କଥା ଉଭୟ ବିଷୟର ଶିକ୍ଷକ ପରସ୍ପର ସାହାଯ୍ୟ ଓ ସହଯୋଗଦ୍ୱାରା ଅଧିକ ଦକ୍ଷତା ସହିତ ନିଜ ନିଜ ଶ୍ରେଣୀରେ ଶିକ୍ଷା ଦେଇ ପାରିବେ ।



— ପାଞ୍ଚ —

# ଇତିହାସ ଶିକ୍ଷାଦାନ ପ୍ରଣାଳୀ

**ଆଗ୍ରହ ଓ ପଦ୍ଧତି**—ଇତିହାସ ଶିକ୍ଷାଦାନ ପ୍ରଣାଳୀରେ ଅଧୁନା ବିଶେଷ ଆନ୍ଦୋଳନ ଓ ପରିବର୍ତ୍ତନ ଘଟୁଅଛି । ପ୍ରାଚୀନ ପଦ୍ଧତିରେ ଇତିହାସ ପାଠରେ ଛାତ୍ରମାନଙ୍କର ଇତିହାସ ପ୍ରତି ବିଶେଷ ଅନାଗ୍ରହ ଜାତ ହେଉଥିବା ଜାଣି ବିଶେଷଜ୍ଞମାନେ ନୂଆ ନୂଆ ପଦ୍ଧତି କଥା ଭାବିବାରେ ଲଗିଛନ୍ତି । ମାନବଜାତିର ବ୍ୟକ୍ତିତ୍ୱ ଓ ସଂସ୍କୃତି ଇତିହାସଶିକ୍ଷାଦ୍ୱାରା ଯେପରି ମାର୍ଜିତ ହୋଇପାରେ, ଅନ୍ୟ ବିଷୟର ଶିକ୍ଷାଦ୍ୱାରା ତାହା ଘଟିବାର ସମ୍ଭାବନା ଅଳ୍ପ । ସୁତରାଂ ଇତିହାସ ଶିକ୍ଷାଦାନରେ କେବଳ ସ୍ମୃତିଶକ୍ତି ଉପରେ ଅଧିକ ଜୋର ଦେବା ପଦ୍ଧତିକୁ ଏବେ ପରିତ୍ୟାଗ କରିବାକୁ ହେବ । ତେଣୁ ଇତିହାସ ଶିକ୍ଷାଦାନ ପଦ୍ଧତି ଦିନକୁଦିନ ନୂଆ ନୂଆ ଆକାର ଧାରଣ କରୁଅଛି ।

**ପାଠ୍ୟପୁସ୍ତକ ଓ ମୌଖିକପାଠ**—ଇତିହାସ ଶିକ୍ଷାଦାନରେ ଦୁଇଟି ପ୍ରଧାନ ସାଧନ ବା ଉପାୟ ରହିଅଛି—ପ୍ରଥମଟି ଇତିହାସ ପାଠ୍ୟପୁସ୍ତକ ଓ ଦ୍ୱିତୀୟଟି ମୌଖିକ ପାଠ ବା ଶିକ୍ଷାଦାନ । ତଳ ଶ୍ରେଣୀରେ ମୌଖିକ ପାଠ ଏବଂ ଉପର ଶ୍ରେଣୀରେ ପାଠ୍ୟପୁସ୍ତକଦ୍ୱାରା ଛାତ୍ରମାନେ ଅଧିକ ଉପକୃତ ହୋଇଥାନ୍ତି । ମୌଖିକ

ପାଠ ଛାତ୍ରର ସ୍ମୃତିରେ ଚିରସ୍ଥାୟୀ ହୋଇପାରେ ନା, ତେଣୁ ପାଠ୍ୟ-ପୁସ୍ତକ ଇତିହାସଶିକ୍ଷାର ଏକ ଅପରିହାର୍ଯ୍ୟ ଅଙ୍ଗ ବୋଲି ବିବେଚିତ ହୋଇଥାଏ । ମୌଖିକ ଶିକ୍ଷାଦାନ ବିଷୟ ପ୍ରତି ଛାତ୍ରର ଆଗ୍ରହ ଓ ଶ୍ରଦ୍ଧା ଜାତ କରାଏ । ତେଣୁ କେବଳ ପୁସ୍ତକ ପାଠଦ୍ୱାରା ଛାତ୍ର ପୂର୍ଣ୍ଣ ରୂପେ ଉପକୃତ ହୋଇ ପାରେ ନା । ସୁତରାଂ ପୁସ୍ତକପାଠ ଓ ମୌଖିକ ଶିକ୍ଷାଦାନ ଉଭୟ ପରସ୍ପରାପେକ୍ଷୀ ଉପାୟ ବୋଲି ବିବେଚିତ ହୁଏ । ଏଥିସକାଶେ ଉପଯୁକ୍ତ ପାଠ୍ୟପୁସ୍ତକ ନିର୍ବାଚନ, ଏବଂ ଶିକ୍ଷକଙ୍କ ମୌଖିକ ଶିକ୍ଷାଦାନରେ ବିଷୟ ନିର୍ବାଚନ ଓ ଶିକ୍ଷା-ଦାନପନ୍ଥା ଅତି ଉପାଦେୟ ଅଟେ ।

**ଶିକ୍ଷକଙ୍କ ବ୍ୟକ୍ତିଗତ ପାଟବ**—ଶିକ୍ଷକଙ୍କ ଶିକ୍ଷାଦାନ ପନ୍ଥା ମଧ୍ୟରେ ବହୁ କଥା ହୋଇଅଛି : ବିଷୟରେ ତାଙ୍କର ଘୋର ଅନୁରାଗ ଓ ପ୍ରବେଶ ଥିବ, ଛାତ୍ରମାନଙ୍କ ଅବବୋଧ ଓ ଆଗ୍ରହ ଜାତ କରାଇବା ନିମନ୍ତେ ସେ ସମର୍ଥ ହେବେ, ତାଙ୍କର ବାଗ୍ମିତା, ଚରିତ୍ରଶକ୍ତି ଓ ନାଟକୀୟ ଢଙ୍ଗରେ ଶିକ୍ଷାଦାନ ଶକ୍ତି ଥିବ, ସର୍ବୋପରି ସେ ନିଜ ଛାତ୍ରମାନଙ୍କର ବୋଧଶକ୍ତିର କଳନା କରିବାକୁ ସଂପୂର୍ଣ୍ଣ ସମର୍ଥ ହେବେ । ଏହା ଛଡ଼ା ଶିକ୍ଷକ ନିଜେ ବେଳେ ବେଳେ କଳାପଟାରେ ଚିତ୍ରାଙ୍କନ ମଧ୍ୟ କରି ପାରୁଥିବେ । ଅନେକ ଶିକ୍ଷକ ଉପଯୁକ୍ତ ପ୍ରଶ୍ନ ପଚାରି ଜାଣନ୍ତି ନାହିଁ ଏବଂ ଅନର୍ଗଳ ଓ ଅନବରତ ବକ୍ତୃତା ଦ୍ୱାରା ଶ୍ରେଣୀର ବିରକ୍ତି ଜାତ କରନ୍ତି । ପ୍ରଶ୍ନର ଦୁଇ ପ୍ରକାର ଉପାଦେୟତା ଅଛି; ପ୍ରଥମ, ଜ୍ଞାନଦାନ ବେଳେ ଉପଯୁକ୍ତ ପ୍ରଶ୍ନଦ୍ୱାରା ଦାତବ୍ୟ ପାଠର କେତେକ ଅଂଶ ଛାତ୍ରମାନଙ୍କଠାରୁ ଆଦାୟ କରି ଯାଇ ପାରେ ଏବଂ ଏହା ଦ୍ୱାରା ଶିକ୍ଷକଙ୍କୁ ଅପେକ୍ଷାକୃତ ଅଳ୍ପ ବକିବାକୁ

ପଡ଼େ; ତଥା ଏଥିରେ ଛାତ୍ରମାନଙ୍କର ଶିକ୍ଷା ଅଧିକ ଫଳପ୍ରଦ ହୁଏ; ଦ୍ୱିତୀୟ, ଛାତ୍ରମାନେ ନୂତନ ଜ୍ଞାନ ସମ୍ୟକ୍ ରୂପେ ଗ୍ରହଣ କଲେ କି ନାହିଁ, ତାହା କଳନା କରାଯାଇପାରେ । ଶିକ୍ଷକଙ୍କ ପ୍ରଶ୍ନଗଠନ କୌଶଳ ତାଙ୍କ ପ୍ରବୀଣ ଶିକ୍ଷକତାର ପରିଚାୟକ ଅଟେ । ପ୍ରଶ୍ନ-ଗଠନରେ 'କଅଣ ?' ଅପେକ୍ଷା 'କାହିଁକି ?' ଓ 'କିପରି ?' ଅଧିକ କାର୍ଯ୍ୟ ଓ ଉପକାରୀ ହୁଏ ।

**ଗଳ୍ପ ଓ ଜୀବନୀ** ।—ପ୍ରାଥମିକ ବିଦ୍ୟାଳୟରେ ଗଳ୍ପ ଓ ଜୀବନୀ ଆକାରରେ ଇତିହାସ ଶିକ୍ଷା ଦେବା ଉଚିତ । ସେଥିରେ ଜୀବନ୍ତ ବର୍ଣ୍ଣନା ଅତ୍ୟାବଶ୍ୟକୀୟ ଅଟେ । ଅଳ୍ପବୟସ୍କ ବାଳକମାନେ ଦୀର୍ଘ ଗଳ୍ପ ମନେ ରଖି ପାରନ୍ତି ନାହିଁ । ତେଣୁ ଗଳ୍ପକୁ କେତେକ ଅନୁଚ୍ଛେଦରେ ବିଭକ୍ତ କରି ଏବଂ ପ୍ରତି ବିଭାଗର ଶେଷରେ ଥରେ ଆବୃତ୍ତି କରାଇ ବିଷୟକୁ ଶିକ୍ଷା ଦିଆଯିବ । ସୁଗମ ଗଳ୍ପର ଶିକ୍ଷା ଶେଷରେ ଆମୂଳଚୂଳ ଆବୃତ୍ତି କରାଇ କଳାପଟାରେ ସାରାଂଶ ଦେବାବେଳେ ପୂର୍ଣ୍ଣ ବାକ୍ୟ ନ ଦେଇ କେତେକ ଶବ୍ଦ ବା ଟିପ୍ପଣୀ ବ୍ୟବହାର କରାଯିବ ।

**ସମୟର ଧାରଣା** :—ଶିଶୁ ଛାତ୍ରମାନଙ୍କ ମନରେ ସମୟର ଧାରଣା ଜନ୍ମାଇବା ଦୁରୂହ ହେଲେହେଁ ଅନେକ ପରିମାଣରେ ଆବଶ୍ୟକ ଅଟେ । ଏଥିସକାଶେ ସମୟ ରେଖା ଓ ନାନାପ୍ରକାର ଚିତ୍ରର ସାହାଯ୍ୟ ନିଆଯାଇ ପାରିବ । ଛାତ୍ରମାନଙ୍କର ସ୍ୱହସ୍ତକୃତ ଛବି ଏଥିରେ ବିଶେଷ କାର୍ଯ୍ୟକାରୀ ଓ ଶିକ୍ଷାପ୍ରଦ ହୋଇଥାଏ ।

**ଛବି ଓ ଚିତ୍ର** :—ଶିକ୍ଷାଦାନରେ ନାନାପ୍ରକାର ଚିତ୍ର ଓ ଛବି ଏକ ଅତ୍ୟାବଶ୍ୟକ ଅଙ୍ଗ । ଛାତ୍ରର କୌତୂହଳ ଓ ଆଗ୍ରହ ଜନ୍ମାଇବାରେ ସେଗୁଡ଼ିକ ବିଶେଷ କାର୍ଯ୍ୟକାରୀ ହୁଏ । ବଜାରରୁ ସାନବଡ଼ ନାନାପ୍ରକାର ଛବି କିଣାଯାଇ ପାରେ । ଶିକ୍ଷକ ଓ ଛାତ୍ର-ମାନେ ସ୍ୱହସ୍ତରେ ଅଧିକାଂଶ ପ୍ରସ୍ତୁତ କରିବେ । ଛବି, ଚିତ୍ର ବା ମାନଚିତ୍ର ଶ୍ରେଣୀରେ କେବଳ ଦେଖାଇଦେଲେ, ତାହାର ବ୍ୟବ-ହାରରେ ଫଳ ମିଳେ ନାହିଁ । ତହିଁରୁ ଶିକ୍ଷଣୀୟ ସମସ୍ତ ବିଷୟ ପ୍ରଶ୍ନୋତ୍ତର, କଥୋପକଥନ ଯୁକ୍ତିତର୍କଦ୍ୱାରା ଶିକ୍ଷା ଦେବାକୁ ହେବ । କେତେକ ଶିକ୍ଷକ ଛବିଟି ଦେଖାଇଦେଇ ସବୁ କଥା ନିଜେ କହୁ-ଛନ୍ତି । ଏଥିରେ ଶିକ୍ଷା ପୂର୍ଣ୍ଣାଙ୍ଗ ହୁଏ ନାହିଁ କିମ୍ବା ଛାତ୍ରମାନଙ୍କର ଚିନ୍ତାଶକ୍ତି ଓ ପର୍ଯ୍ୟବେକ୍ଷଣ ଶକ୍ତିର ପୂର୍ଣ୍ଣ ଅନୁଶୀଳନ ହୁଏ ନାହିଁ । ଛବିରେ ଥିବା ବିଭିନ୍ନ ବସ୍ତୁ ଓ ଅଙ୍ଗ, ପୋଷାକ, ଅସ୍ତ୍ରଶସ୍ତ୍ର, ଅଳଙ୍କାର ପ୍ରଭୃତିର ସମ୍ୟକ୍ ଆଲୋଚନା ହେଲେ ଛାତ୍ରର ବୈଷୟିକ ଧାରଣା ଓ ଚିନ୍ତାଶକ୍ତିର ସମ୍ୟକ୍ ବିକାଶ ଓ ପରିପୁଷ୍ଟି ସାଧିତ ହୁଏ ।

ଛାତ୍ରର ପାଠ୍ୟପୁସ୍ତକରେ ସହାୟକ ବହୁ ଛବି ଥାଏ । ଶିକ୍ଷକ-ମାନେ ତାହାର ବ୍ୟବହାର କରନ୍ତି ନାହିଁ । ସେ ସବୁ ପ୍ରତ୍ୟେକ ଛାତ୍ର ପାଖରେ ଥିବାରୁ ଏବଂ ଛାତ୍ର ତାହା ସବୁବେଳେ ଓ ଘରେ ପୁନରା-ବୃତ୍ତି କରିବା ସଙ୍କାଶେ ବ୍ୟବହାର କରିବା ସୁବିଧା ଥିବାରୁ ଶିକ୍ଷକ ସେହି ଛବିମାନଙ୍କର ପୂର୍ଣ୍ଣ ସାହାଯ୍ୟ ନେବା ବିଧେୟ ।

ଶିକ୍ଷକ ନିଜେ କଳାପଟାରେ ନାନାପ୍ରକାର ଛବି ଅଙ୍କନ କରିବାକୁ ଅଭ୍ୟାସ କରିବେ । ଏଥି ସାହାଯ୍ୟରେ ସେ ନିଜ ଅଭୀଷ୍ଟ ବା

ଲକ୍ଷ୍ୟ ବିଷୟ ଯେପରି ସହଜରେ ଶିକ୍ଷା ଦେଇ ପାରିବେ, ମୁଦ୍ରିତ ଛବିରୁ ସେ ପ୍ରକାର ସାହାଯ୍ୟ ସର୍ବଦା ସୁଲଭ ନୁହେ । ଗୁମ୍ଫା, କୁଟୀର, ସୌଧ, ଦୁର୍ଗ, ଜୀବଜନ୍ତୁ, ରଥ, ଜାହାଜ ପ୍ରଭୃତି ଏବଂ ସେସବୁର ଅଂଶ ବିଶେଷମାନ ଅନେକ ସମୟରେ ମୁଦ୍ରିତ ଛବିରୁ ମିଳେ ନାହିଁ ।

**ପାଠ୍ୟପୁସ୍ତକ**—ନିମ୍ନତମ ଶ୍ରେଣୀମାନଙ୍କରେ ଇତିହାସ ପାଠ୍ୟପୁସ୍ତକର ଆବଶ୍ୟକତା ନ ଥାଏ । ତଥାପି ଶିଶୁର ଅତି ସରଳ ମାତୃଭାଷାରେ ଖଣ୍ଡିଏ ପୁସ୍ତକ ଶିଶୁ ହାତରେ ଥିଲେ, ଶିକ୍ଷକ ମୌଖିକରେ ଦେଇଥିବା ପାଠ ଆବୃତ୍ତି କରିବା ନିମନ୍ତେ ଶିଶୁକୁ ସୁବିଧା ମିଳେ । ଲେଖକମାନେ ମନେକରନ୍ତି, ଛାତ୍ରର ବୟସ ଦୃଷ୍ଟିରେ ପାଠ୍ୟପୁସ୍ତକର ଆକାର କ୍ଷୁଦ୍ର ହେବା ଉଚିତ । କିନ୍ତୁ ମନୋରଞ୍ଜନ ଆକାରରେ ବିଷୟ ସନ୍ନିବେଶ ନିମନ୍ତେ, ପୁସ୍ତକର ଆକାର ଅଳ୍ପାଧିକ ବୃହତ୍ ହେଲେ ମଧ୍ୟ କିଛି କ୍ଷତି ନାହିଁ । ମନୋରଞ୍ଜକ ଲେଖା ଛାତ୍ରର ଆଗ୍ରହ ଜାତ କରାଏ ଏବଂ ତାହାହିଁ ଉତ୍କୃଷ୍ଟ ପାଠ୍ୟପୁସ୍ତକର ପ୍ରଧାନ ଗୁଣ । ଛାତ୍ରର ବୟସ ଯେତେ ଊଣା ହେବ, ବିଷୟର ସନ୍ନିବେଶ ସେତିକି ଚିତ୍ତାକର୍ଷକ ହେବା ଆବଶ୍ୟକ । ବିଷୟର ଭାଷା ଓ ବର୍ଣ୍ଣନା ସରଳ ଓ ଚିତ୍ତାକର୍ଷକ ନ ହେଲେ, ଛାତ୍ରମାନେ ପାଠ୍ୟପୁସ୍ତକକୁ ନୀରସ ମନେକରନ୍ତି ଏବଂ ଯାହା ପଢ଼ନ୍ତି ସେମାନଙ୍କର ମନେ ରହେ ନାହିଁ । ସଂକ୍ଷିପ୍ତ ଓ କ୍ଲିଷ୍ଟ ଲେଖା ସେମାନଙ୍କର ବୋଧଗମ୍ୟ ନ ହେବା ଫଳରେ ତାହାକୁ ସେମାନେ ଶ୍ଳୋକ କଣ୍ଠସ୍ଥ କରିବା ପରି କେବଳ ଘୋଷନ୍ତି ।

ପାଠ୍ୟପୁସ୍ତକରେ ଐତିହାସିକ ଭ୍ରମ ରହିବା ଉଚିତ ନୁହେଁ । ଆଧୁନିକତମ ଗବେଷଣାରେ ବାହାରିଥିବା ନୂଆ ତଥ୍ୟମାନଙ୍କ ଦୃଷ୍ଟିରେ ବର୍ଣ୍ଣନା ନିର୍ଭୁଲ ହେବା ବିଧେୟ । ପୁସ୍ତକର ବର୍ଣ୍ଣିତ ବିଷୟଗୁଡ଼ିକ ବିଶଦ ରୂପେ ବ୍ୟାଖ୍ୟା କରିବା ନିମନ୍ତେ ତହିଁରେ ଯଥେଷ୍ଟ ମାନଚିତ୍ର, ଦୃଷ୍ଟାନ୍ତ ଓ ଛବି ରହିବା ଉଚିତ । ମାନଚିତ୍ରରେ ଭୌଗୋଳିକ ସବୁ ନାମ ନ ଦେଇ, ଛାତ୍ରର ସୁଖ ଅବବୋଧ ନିମନ୍ତେ କେବଳ କେତେକ ଜ୍ଞାତବ୍ୟ ଐତିହାସିକ ସ୍ଥାନ ପ୍ରଭୃତିର ନାମ ରହିବା ଉଚିତ । ପୁସ୍ତକର ମାନଚିତ୍ର ଛଡ଼ା ଛାତ୍ରମାନେ ନିଜ ହାତରେ କେତେକ ଐତିହାସିକ ମାନଚିତ୍ର ପ୍ରସ୍ତୁତ କରିବା ଉଚିତ । ସେହି ମାନଚିତ୍ର ସବୁରେ ସେମାନଙ୍କର ଇତିହାସ ପାଠ ସଙ୍ଗେ ସମ୍ପୃକ୍ତ ବିଷୟମାନ କେବଳ ରହିବା ଉଚିତ । ଗୋଟିଏ ଶ୍ରେଣୀର ସବୁ ଛାତ୍ର ମିଶି ଏପ୍ରକାର ବଡ଼ ବଡ଼ ମାନଚିତ୍ର ପ୍ରସ୍ତୁତ କଲେ ଅଧିକ ଉପକାର ମିଳିଥାଏ ।

ଶିକ୍ଷାଦାନର ପୂର୍ଣ୍ଣଫଳ ନିମନ୍ତେ ଶିକ୍ଷକଙ୍କ ଜୀବନ୍ତ ବର୍ଣ୍ଣନା ଯେପରି ଆବଶ୍ୟକ, ଛାତ୍ରମାନେ ନିଜ ହାତରେ ମାନଚିତ୍ର, ଛବି, ମୂର୍ତ୍ତି, ଦୁର୍ଗ ପ୍ରଭୃତି ପ୍ରସ୍ତୁତ କରିବା ସେହିପରି ଆବଶ୍ୟକ ଏବଂ ଶିକ୍ଷକଙ୍କ ସହଯୋଗରେ ଏକାଙ୍କିକ ନାଟକ, ଗଳ୍ପ, ପ୍ରବନ୍ଧ ପ୍ରଭୃତି ଲେଖି ସେସବୁର ଆବୃତ୍ତି କରିବା ମଧ୍ୟ ସେହିପରି ଆବଶ୍ୟକ । ତାହା ହୋଇ ପାରିଲେ, ଅତୀତର ଘଟଣାମାନ ଆଧୁନିକ ଓ ଜୀବନ୍ତ ପରି କିମ୍ବା ପ୍ରତ୍ୟକ୍ଷ ଦେଖିଲା ପରି ସହଜରେ ସେମାନଙ୍କର ଅବବୋଧ ହୁଏ । ପାଠ୍ୟପୁସ୍ତକର ଅଧୀତବ୍ୟ ବିଷୟ ସେମାନେ ଅଳ୍ପ ଆୟାସରେ ମନେ ରଖିପାରନ୍ତି ଏବଂ ମୁଖସ୍ଥୀକରଣର ମାତ୍ରା ସେଥିର

ଫଳରେ ଜାତ ହୋଇଯାଏ । ଇତିହାସ ପ୍ରତି ସେମାନଙ୍କର ଆଗ୍ରହ ଜାତ ହୁଏ । ଅତୀତ ଓ ବର୍ତ୍ତମାନର ପାର୍ଥକ୍ୟ, ସଂସାରର ପରିବର୍ତ୍ତନଶୀଳତା ସେମାନେ ସହଜରେ ଉପଲବ୍ଧି କରିପାରନ୍ତି ।

ଶ୍ରେଣୀ ଯେତିକି ଉଚ୍ଚତର ହୋଇଥାଏ, ପାଠ୍ୟପୁସ୍ତକର ଆବଶ୍ୟକତା ସେତିକି ବଢୁଥାଏ । ଉଚ୍ଚତମ ଶ୍ରେଣୀମାନଙ୍କରେ ପାଠ୍ୟପୁସ୍ତକ ଛାତ୍ରମାନଙ୍କର ପ୍ରଧାନ ସହାୟକ ହୁଏ ।

ପାଠ୍ୟପୁସ୍ତକ ତିନି ପ୍ରକାର ଦୃଷ୍ଟିରୁ ଲେଖା ଯାଇଥାଏ । ପ୍ରଥମ—ଯୁଗସ୍ରଷ୍ଟା ଓ ଯୁଗନିଦ୍ଧାରକ ନେତା ବା ପ୍ରଧାନ ଲୋକମାନଙ୍କ ଜୀବନ ଉପରେ ଭିତ୍ତି କରି ଯୁଗର ପ୍ରଧାନ ଘଟଣା ବା ଇତିବୃତ୍ତ ଛାତ୍ରମାନଙ୍କୁ ଶିକ୍ଷା ଦେବା ନିମନ୍ତେ କତିପୟ ବଡ଼ ଲୋକଙ୍କ ଜୀବନୀ ଘେନି ଯେଉଁ ପାଠ୍ୟ ପୁସ୍ତକ ଲିଖିତ ହୋଇଥାଏ, ତାହା ନିମ୍ନତମ ଶ୍ରେଣୀମାନଙ୍କର ଉପଯୋଗୀ ହୁଏ । ଦ୍ୱିତୀୟ—କାଳ ଓ ଘଟଣା ଅନୁକ୍ରମରେ ଯେଉଁ ଇତିହାସ ପାଠ୍ୟପୁସ୍ତକ ଲିଖିତ ହୋଇଥାଏ, ତାହା କେବଳ ଘଟଣା ପରମ୍ପରାର ଏକ ଧାରାବାହିକ ସଙ୍କଳନର ରୂପ ଧାରଣ କରିଥାଏ । ଏପ୍ରକାର ପାଠ୍ୟପୁସ୍ତକରୁ ଛାତ୍ରମାନେ କେତେଗୁଡ଼ିଏ ଘଟଣାର ବିବରଣ ଜାଣନ୍ତି ଏବଂ ଗୋଟିଏ ଘଟଣା ପରେ ଘଟିଥିବା ଅନ୍ୟତର ଘଟଣାର କି ସମ୍ବନ୍ଧ ରହିଅଛି, ତାହା ନିର୍ଣ୍ଣୟ କରି ପାରନ୍ତି ନାହିଁ । ତୃତୀୟ—ପ୍ରାସଙ୍ଗିକ ଆଲୋଚନା କ୍ରମରେ (ଯଥା, ଭାରତର ଧର୍ମ ଆନ୍ଦୋଳନ, ମୋଗଲରାଜାମାନଙ୍କର ଦାକ୍ଷିଣାତ୍ୟ ନୀତି, ଭାରତର ସ୍ୱାଧୀନତା ଆନ୍ଦୋଳନ) କ୍ରମରେ ଯେଉଁ ପାଠ୍ୟ ପୁସ୍ତକ ଲିଖିତ ହୋଇଥାଏ, ସେଥିରୁ ଛାତ୍ରମାନେ ସାମୟିକ ଘଟଣା ସ୍ରୋତ ବା ଚିନ୍ତାସ୍ରୋତର ଅନ୍ତର୍ଗତ ଅର୍ଥାତ୍ ବୈପ୍ଳବିକ ପରିବର୍ତ୍ତନ

କଥା ଭଲ ରୂପେ ବୁଝିପାରନ୍ତି । କିନ୍ତୁ ଏପରି ପାଠ୍ୟପୁସ୍ତକ କୋମଳମତି ବାଳକମାନଙ୍କର ସାଧାରଣତଃ ଦୁର୍ବୋଧ ହୋଇଥାଏ ଏବଂ ସେମାନଙ୍କର ସମୟର ଧାରଣାରେ ଗୋଳମାଳ ସୃଷ୍ଟି କରିଥାଏ ।

ଘଟଣାକାଳର ସଙ୍ଗତି ରଖି ପ୍ରସଙ୍ଗର ଆଲୋଚନା ହେଲେ ତାହା ଛାତ୍ରମାନଙ୍କ ପକ୍ଷରେ ଦୁର୍ବୋଧ ହୁଏ ନାହିଁ । ଏଥି ଲାଗି ବିଭିନ୍ନ ଯୁଗ ବା ରାଜତ୍ୱକାଳର ପ୍ରାସଙ୍ଗିକ ଆଲୋଚନାମାନ ଯେଉଁ ପାଠ୍ୟପୁସ୍ତକରେ କ୍ଷୁଦ୍ର ପରିସର ମଧ୍ୟରେ ଲିଖିତ ହୋଇଥାଏ, ସେହି ପାଠ୍ୟପୁସ୍ତକ ଛାତ୍ରମାନଙ୍କ ପକ୍ଷରେ ଠିକ ଉପଯୋଗୀ ହୁଏ । ହିନ୍ଦୁ ଯୁଗରୁ ଆରମ୍ଭ କରି ବ୍ରିଟିଶ ଯୁଗ ପର୍ଯ୍ୟନ୍ତ ଦାକ୍ଷିଣାତ୍ୟର ଇତିହାସ ଏକତ୍ର ଆଲୋଚନା ନ କରି ଯଦି କେବଳ ମୋଗଲ-ମାନଙ୍କ ଅମଳରେ ଦାକ୍ଷିଣାତ୍ୟର ଇତିହାସ ବା ମୋଗଲମାନଙ୍କର ଦାକ୍ଷିଣାତ୍ୟନୀତି ଛାତ୍ରମାନଙ୍କୁ ଶିକ୍ଷା ଦିଆଯାଏ, କୋମଳମତି ଛାତ୍ର-ମାନଙ୍କ ପକ୍ଷରେ ତାହା ଦୁର୍ବୋଧ ହୁଏ ନାହିଁ । ବୈଦିକ ଯୁଗରୁ ଆରମ୍ଭ କରି ବର୍ତ୍ତମାନ ପର୍ଯ୍ୟନ୍ତ ଭାରତର ଧର୍ମର କି ପରି-ବର୍ତ୍ତନ ବା ବିକାଶ ହୋଇଅଛି, ତାହା ଗୋଟିଏ ପ୍ରସଙ୍ଗ ରୂପରେ ପାଠ ଆକାରରେ ଶିକ୍ଷା ନ ଦେଇ, ଯଦି ବୈଦିକଯୁଗ, ବୌଦ୍ଧ-ଯୁଗ, ପୌରାଣିକ ଯୁଗ, ତୁର୍କୀ-ଆଫଗାନ ଯୁଗ, ମୋଗଲଯୁଗ, ବ୍ରିଟିଶଯୁଗର ଧର୍ମବିବର୍ତ୍ତନକୁ ପୃଥକ୍ ପୃଥକ୍ ରୂପେ ଶିକ୍ଷା ଦିଆଯିବ, ତାହା ଛାତ୍ରମାନେ ଅଧିକ ସହଜରେ ହୃଦୟଙ୍ଗମ କରିପାରିବେ ।

**ଶ୍ରେଣୀ ଅଧ୍ୟାପନା**.— କେତେକ ଶିକ୍ଷକ ପାଠ୍ୟ-ପୁସ୍ତକରୁ ଗୋଟିଏ ଗୋଟିଏ ଅଂଶ ଘରୁ ପଢ଼ିଆସିବା ପାଇଁ ଛାତ୍ର-

ମାନଙ୍କୁ କହନ୍ତି । ଶ୍ରେଣୀରେ ସେମାନଙ୍କୁ ପଠିତାଂଶରୁ ପ୍ରଶ୍ନ ପଚାରନ୍ତି ଏବଂ ଦୁର୍ବୋଧ ଅଂଶମାନ ବୁଝାଇ ଦିଅନ୍ତି । ଅନ୍ୟ କେତେକେ ଶ୍ରେଣୀରେ ପାଠ୍ୟପୁସ୍ତକରୁ ପଠନ କରନ୍ତି ଏବଂ କଠିନ ଅଂଶମାନ ବୁଝାଇ ଦିଅନ୍ତି । ଅନ୍ୟମାନେ ପାଠ୍ୟପୁସ୍ତକ ବ୍ୟବହାର ନ କରି ବକ୍ତୃତାଦ୍ୱାରା ଛାତ୍ରମାନଙ୍କୁ ଇତିହାସର ବିବରଣମାନ ଜଣାଇଦିଅନ୍ତି । ଛାତ୍ରମାନେ ପେଡ଼ିରେ ପୋଥି ସଂଗ୍ରହ କରିବା ପରି ମନରେ ଜ୍ଞାନ ସଂଗ୍ରହ କରନ୍ତି । ପ୍ରଥମ ପ୍ରଣାଳୀରେ ଛାତ୍ରର ବିଷୟ ସମ୍ବନ୍ଧରେ କୌଣସି ପ୍ରକାର ପ୍ରାଥମିକ ଧାରଣା ନ ଥିବାରୁ ସେ ଗୋଟିଏ ଅଦେଖା ଜଙ୍ଗଲ ମଧ୍ୟରେ ବିଚରଣ କରି ବାଟବଣା ହୁଏ । ଦ୍ୱିତୀୟ ପ୍ରଣାଳୀରେ ଛାତ୍ରର ଅନାଗ୍ରହ ଓ ବିରକ୍ତି ଜାତ ହୁଏ । ତୃତୀୟ ପ୍ରଣାଳୀରେ ଛାତ୍ର ନିଷ୍କ୍ରିୟ ଶ୍ରୋତା ରୂପେ ବସି ରହେ ଏବଂ ପାଠ ତାକୁ ବିରକ୍ତିକର ବୋଧ ହୁଏ ।

ଏପ୍ରକାର ପ୍ରଣାଳୀ ପରିବର୍ତ୍ତିରେ ଛାତ୍ରକୁ ଯଦି ଗୋଟିଏ ଗୋଟିଏ ସମସ୍ୟା ସମାଧାନ କରିବାକୁ ଦିଆଯାଆନ୍ତା, ସେ ତହିଁରେ ଅଧିକ ମନୋଯୋଗୀ, ସକ୍ରିୟ ଓ ଉତ୍ସୁକ ହୁଅନ୍ତା । ସ୍ୱାବଲମ୍ବନ-ଶୀଳତା, ସ୍ୱାଧ୍ୟାୟ ଓ ସ୍ୱାଧୀନ ଆଲୋଚନା ହେତୁ ପାଠର ବିଷୟ ମଧ୍ୟ ଅଧିକ ପରିମାଣରେ ଆୟତ୍ତ କରି ପାରନ୍ତା । କ୍ଲାଇବଙ୍କ ମୁଷ୍ଟିମେୟ ସୈନ୍ୟ ଥାଇ ଏବଂ ସିରାଜୁଦ୍ଦୌଲଙ୍କ ବହୁସଂଖ୍ୟକ ସୈନ୍ୟ ଓ ଯୁଦ୍ଧୋପକରଣ ଥାଇ ସୁଦ୍ଧା, ସିରାଜୁଦ୍ଦୌଲ କାହିଁକି ପରାସ୍ତ ହେଲେ ? ଛାତ୍ରକୁ ଏ ସମସ୍ୟା ଦିଆଗଲେ, ସେ ନିଜ ଚେଷ୍ଟାରେ ତହିଁର ସମାଧାନ କରିବ । ଯେଉଁ ସ୍ଥାନରେ ସାହାଯ୍ୟ ମଝିରେ ମଝିରେ ଆବଶ୍ୟକ ହେବ, କେବଳ ସେହିଠାରେ ଶିକ୍ଷକ

ସନ୍ଦେହ ବା ଅଭାବ ମୋଚନ କରିବେ । ଏପ୍ରକାର ପାଠରେ ଛାତ୍ରର ମନ ସକ୍ରିୟ ହୁଏ ଏବଂ ତାର ମନୋବୃତ୍ତିର ବିକାଶ ହୁଏ । ଛାତ୍ର ଗବେଷଣା ଓ ଚିନ୍ତା କରିବାକୁ ଶିଖେ । ଶିକ୍ଷକ ଯଦିଓ ଯୁଦ୍ଧର ବିବରଣ ବର୍ଣ୍ଣନା କରିବା ପରିବର୍ତ୍ତେ ଏପ୍ରକାର କେତୋଟି ସମସ୍ୟାଦ୍ୱାରା ଅଧିକ କୃତିତ୍ୱ ସହ ସେହି ଯୁଦ୍ଧର କଥା ଶିକ୍ଷା ଦେଇ-ପାରିବେ ।

ଶ୍ରେଣୀ ଯେତିକି ଉଚ୍ଚତର ହେବ, ସମସ୍ୟାମୂଳକ ଶିକ୍ଷା-ଦାନର ମାତ୍ରା ସେତିକି ଅଧିକ ହେବ ଏବଂ ବର୍ଣ୍ଣନାମୂଳକ ବା ପ୍ରତ୍ୟକ୍ଷ ଜ୍ଞାନଦାନର ମାତ୍ରା ସେତିକି ଊଣା ହେବ । ସମସ୍ୟା, ଆନ୍ଦୋଳନ, ପରିବର୍ତ୍ତନ ପ୍ରଭୃତି ସେହିପରି ଉତ୍ତରୋତ୍ତର ଅଧିକ ଅଧିକ ସଂଖ୍ୟାରେ ଶିକ୍ଷା ଦିଆଯାଇ ପାରିବ । ପ୍ରାଚୀନ ଭାରତର ବାଣିଜ୍ୟ ଚେଷ୍ଟା, ମୋଗଲମାନଙ୍କର ରାଜପୁତନୀତି, ମୁସଲମାନ ଯୁଗରେ ଧର୍ମ ଓ ସାମାଜିକ ସଂସ୍କାର, ବ୍ରିଟିଶ ଯୁଗରେ ସ୍ୱାୟତ୍ତ ଶାସନର ପରିବର୍ତ୍ତନ ପ୍ରଭୃତି ପ୍ରସଙ୍ଗ ଓ ତତ୍ସଂପୃକ୍ତ ସମସ୍ୟାମାନ ଛାତ୍ର-ମାନଙ୍କୁ ସ୍ୱାଧ୍ୟାୟ ଓ ସ୍ୱାଧୀନ ଆଲୋଚନାଦ୍ୱାରା ଶିକ୍ଷା କରିବାକୁ ସାହାଯ୍ୟ କରାଯିବ ।

ଶିକ୍ଷକ ଛାତ୍ରମାନଙ୍କୁ ପାଠ୍ୟପୁସ୍ତକରୁ ଏକ ନିର୍ଦ୍ଦିଷ୍ଟ ଅଂଶ ଘରେ ପଢ଼ିବାକୁ ଦେବେ । ତହିଁରୁ କେତେକ ପ୍ରଶ୍ନ ଓ ସମସ୍ୟା ଯତ୍ନ ସହକାରେ ବାଛି ସେମାନଙ୍କୁ ଜଣାଇଦେବେ । ଛାତ୍ରମାନେ ପୁସ୍ତକକୁ ଭଲ ରୂପେ ପଢ଼ି ତହିଁ ଆର ଦିନ ପ୍ରଶ୍ନର ଓ ସମସ୍ୟାର ସମାଧାନ କରିବାକୁ ଶ୍ରେଣୀରେ ଚେଷ୍ଟା କରିବେ । ଶ୍ରେଣୀରେ ଆଲୋଚନା ଓ ସମାଲୋଚନା ହେବ । ଦିନେ ଦିନେ କେତେକ ନିର୍ଦ୍ଦିଷ୍ଟ ଅନୁଚ୍ଛେଦ

କିମ୍ବା ପରିଚ୍ଛେଦର ଏହି ପ୍ରଣାଳୀରେ ଆଲୋଚନା ଓ ସମାଲୋଚନା ହେବ । ବେଳେ ବେଳେ ଶିକ୍ଷକଙ୍କ ଜ୍ଞାନଦାନ ବା ବର୍ଣ୍ଣନା ପରେ ମଧ୍ୟ ଏପ୍ରକାର ଆଲୋଚନା ଓ ସମାଲୋଚନା ହେବ ।

କୌଣସି ଗୋଟିଏ ପାଠର ପ୍ରତ୍ୟେକ ଅଂଶ ବଣ୍ଡ୍ ରୂପେ ଶିକ୍ଷା ଦେବାର ଆବଶ୍ୟକତା ସର୍ବଦା ନ ଥାଏ । କୌଣସି ପାଠକୁ ବିସ୍ତୃତ ଓ ତନ୍ନତନ୍ନ ରୂପେ ଆଲୋଚନା କରିବାକୁ ହୁଏ, କୌଣସି ପାଠର ଅଂଶ ବିଶେଷକୁ ବିସ୍ତୃତ ଓ ତନ୍ନତନ୍ନ ରୂପେ ଆଲୋଚନା କରିବାକୁ ହୁଏ ଏବଂ କୌଣସି କୌଣସି ପାଠକୁ ସାମୂହିକ ଭାବରେ କିମ୍ବା ଆଂଶିକ ଭାବରେ ସାମାନ୍ୟ ରୂପେ ଆଲୋଚନା କରି ଛାଡ଼ି ଦେବାକୁ ହୁଏ । ଅନେକ ସ୍ଥଳରେ କଳାପଟା, ଛବି, ମାନଚିତ୍ର ପ୍ରଭୃତି ଉପକରଣ ସାହାଯ୍ୟରେ ତନ୍ନତନ୍ନ କରି ବ୍ୟାଖ୍ୟାନ କରିବାକୁ ହୁଏ । ପାଠର ଅଙ୍ଗ ବା ସୂଚନାମାନ କଳାପଟାରେ ଲେଖିଦେଲେ, ଛାତ୍ରଙ୍କୁ ଅନୁଶୀଳନରେ ସୁବିଧା ହୁଏ । ପାଠ ଶେଷରେ ଛାତ୍ରର ସହଯୋଗରେ କଳାପଟାରେ ସାରାଂଶ ଲେଖି-ଦେଲେ ଛାତ୍ର ପକ୍ଷରେ ଭଲ ହୁଏ ।

**ପ୍ରଶ୍ନ** :—ଇତିହାସ ପାଠରେ ଅତୀତ ଓ ବର୍ତ୍ତମାନ ମଧ୍ୟରେ ସମନ୍ୱୟ ସ୍ଥାପନ ଏବଂ କାର୍ଯ୍ୟକାରଣ ସମ୍ପର୍କ ବିଚାର ଏକ ପ୍ରଧାନ ଅଙ୍ଗ । ଅତୀତରୁ ବର୍ତ୍ତମାନ ବୁଝିବେଳେ ପ୍ରସୂତ ହୁଏ । ସୁତରାଂ ଉପଯୋଗୀ ପ୍ରଶ୍ନମାନଙ୍କ ସାହାଯ୍ୟରେ ସେହି ସମ୍ପର୍କ ନିର୍ଣ୍ଣୟ ବା ଆବିଷ୍କାର କରିବା ନିମନ୍ତେ ସେ ସର୍ବଦା ଛାତ୍ରର ମନୋବୃତ୍ତି ଚାଳନା କରିବାକୁ ଯତ୍ନଶୀଳ ରହିବେ ।

ଅଧ୍ୟାପନାର ବର୍ଣ୍ଣନାପ୍ରଧାନ ଅଂଶରେ ମଧ୍ୟ ଶିକ୍ଷକ କେବଳ ବର୍ଣ୍ଣନା କରିବାରୁ ବିରତ ହେବେ । ମଧ୍ୟେ ମଧ୍ୟେ ନିଜ ବର୍ଣ୍ଣନାର କେତେକ ଅଂଶ ଉପଯୁକ୍ତ ପ୍ରଶ୍ନ ସାହାଯ୍ୟରେ ଛାତ୍ର-ମାନଙ୍କଠାରୁ ଆଦାୟ କରିବେ । ଯେତେବେଳେ ଛାତ୍ରମାନଙ୍କର ଆଗ୍ରହ ଅତ୍ୟଧିକ ହୁଏ, କିମ୍ବା ସନ୍ଦେହ ଜାତ ହୁଏ, ସେମାନେ ଶିକ୍ଷକଙ୍କ ବର୍ଣ୍ଣନା କରୁଥିବାବେଳେ ପ୍ରଶ୍ନ ପଚାରିଥାନ୍ତି । ଏପରି ପ୍ରଶ୍ନରେ ଶିକ୍ଷକ ବିରକ୍ତ ନ ହୋଇ, ତାକୁ ଆହ୍ୱାନ କରିବେ ଏବଂ ପରସ୍ପର ଯୁକ୍ତିତର୍କ ଛଳରେ ଛାତ୍ରମାନଙ୍କ ମନରେ ବିଷୟର ସମ୍ୟକ୍ ଧାରଣା ଜାତ କରାଇବାର ଚେଷ୍ଟା କରିବେ । ଛାତ୍ରର ପ୍ରଶ୍ନ କରିବା ପ୍ରବୃତ୍ତି ଦେଖାଗଲେ ବୁଝାଯିବ ଯେ ସେ ପାଠଟି ବୁଝୁଛି ଏବଂ ପାଠରେ ତାହାର ଆଗ୍ରହ ଜନ୍ମିଛି ।

ଇତିହାସ ଅଧ୍ୟାପନାରେ ଶିକ୍ଷକଙ୍କ ପ୍ରଶ୍ନମାନଙ୍କୁ ତିନି ଶ୍ରେଣୀରେ ବିଭକ୍ତ କରାଯାଇ ପାରିବ :

**ମୂଳକ ପ୍ରଶ୍ନ :**— ଛାତ୍ରର ମନୋବୃତ୍ତିମୂଳକ ଓ ଛାତ୍ରଦ୍ୱାରା ଜ୍ଞାନର ଆବିଷ୍କାର ନିମନ୍ତେ ଯେଉଁ ପ୍ରଶ୍ନ କରାଯାଏ, ତାହା ମୂଳକ ପ୍ରଶ୍ନ । ଏଥିରେ ଛାତ୍ରକୁ ଚିନ୍ତା କରିବାକୁ ଏବଂ ବିଷୟଜ୍ଞାନରେ ପ୍ରବେଶ କରିବାକୁ ସାହାଯ୍ୟ କରାଯାଏ ।

**ବୋଧ ପ୍ରଶ୍ନ :**— କଠିନ ଓ ଦୁର୍ବୋଧ ସ୍ଥାନରେ ବିଷୟଟି ଭଲ ରୂପେ ବୁଝିବା ନିମନ୍ତେ ଯେଉଁ ପ୍ରଶ୍ନଦ୍ୱାରା ଛାତ୍ରକୁ ବୁଝିବା ନିମନ୍ତେ ସାହାଯ୍ୟ କରାଯାଏ, ତାହା ବୋଧ ପ୍ରଶ୍ନ ।

**ପରୀକ୍ଷା ପ୍ରଶ୍ନ** :—ପାଠ ଶେଷରେ ଛାତ୍ରର ଜ୍ଞାନପରୀକ୍ଷା ନିମନ୍ତେ ଯେଉଁ ପ୍ରଶ୍ନ କରାଯାଏ, ତାହା ପରୀକ୍ଷା ପ୍ରଶ୍ନ ।

ଜ୍ଞାନ ପରୀକ୍ଷା ପ୍ରଶ୍ନ ବିକ୍ଷିପ୍ତ ନ ହୋଇ ଧାରାବାହିକ ହେବା ଉଚିତ । ଗୋଟିଏ ପାଠରେ ପ୍ରଦତ୍ତ ସମଗ୍ର ଜ୍ଞାନ ଧାରାବାହିକ ଭାବରେ ଆମୂଳଚୂଳ ଆଦାୟ କରିବା ନିମନ୍ତେ ଏହି ପ୍ରଶ୍ନମାନ ପୂର୍ବରୁ ସୁନିର୍ଣ୍ଣିତ ହେବା ଉଚିତ । ସେଥିରେ 'କିଏ', 'କଣ', 'କେବେ' ପ୍ରଭୃତି ଅପେକ୍ଷା 'କାହିଁକି', 'କିପରି' ପ୍ରଭୃତିର ଅଧିକ ବ୍ୟବହାର ହେବା ଉଚିତ ।

ପୂର୍ବୋକ୍ତ ତିନି ପ୍ରକାର ପ୍ରଶ୍ନ ବାହାରେ ଶିକ୍ଷକ ଗୃହ-ପାଠ୍ୟ ଓ ଆଲୋଚନା ନିମନ୍ତେ କେତେକ ଚିନ୍ତାମୂଳକ ପ୍ରଶ୍ନ ଆଗରୁ ପ୍ରସ୍ତୁତ କରି ଆସିଥିବେ । ସେ ଯାହା ଗୋଟିଏ ପାଠରେ ପଢ଼ାଇଲେ, ତାହାର ସମଗ୍ର ବିଷୟ ଗୃହରେ ଆବୃତ୍ତି କରିବାକୁ ଛାତ୍ରକୁ ସାହାଯ୍ୟ କରିବା ନିମନ୍ତେ ଏହି ପ୍ରଶ୍ନମାନ ଉଦ୍ଦିଷ୍ଟ ହେବ । ଛାତ୍ର କେତେକ ପ୍ରଶ୍ନର ଉତ୍ତର ଲେଖି ମଧ୍ୟ ଆଣିବ । ପୂର୍ବବର୍ତ୍ତୀ ଅଧୀତ ପାଠ ଛାତ୍ର ଘରେ ଆବୃତ୍ତି କରୁଛି କି ନାହିଁ, ଜାଣିବା ନିମନ୍ତେ ଶିକ୍ଷକ ପର-ବର୍ତ୍ତୀ ଦିନର ପାଠ ଆରମ୍ଭ କରିବା ପୂର୍ବରୁ କେତେକ ପ୍ରଶ୍ନ ମଧ୍ୟ ପଚାରିବେ ।

**ପାଠଟୀକା** :—ପାଠଟୀକା ଦୁଇ ପ୍ରକାର, ବେଳେବେଳେ ଏହା ଶିକ୍ଷକ ଡାକିଦିଅନ୍ତି କିମ୍ବା କଳାପଟାରେ ଲେଖିଦିଅନ୍ତି ଏବଂ ବେଳେବେଳେ ଛାତ୍ରମାନେ ନିଜ ଚେଷ୍ଟାରେ ପାଠର ଅଗ୍ରଗତି ଅନୁକ୍ରମରେ ପାଠଟୀକା ନିଜେ ଲେଖି ନେଉଥାନ୍ତି । ଦ୍ୱିତୀୟ

ପ୍ରକାର ପାଠଟୀକାଦ୍ୱାରା ଛାତ୍ର ଅଧିକ ଉପକୃତ ହୁଏ, କିନ୍ତୁ ତାହା ଏକ କଠିନ କାର୍ଯ୍ୟ । ତଳ ଶ୍ରେଣୀମାନଙ୍କରେ ଶିକ୍ଷକ ପାଠଟୀକା ଦେବା ଉଚିତ ଏବଂ ବୟସ ବୃଦ୍ଧି ସଙ୍ଗେ ଛାତ୍ର ନିଜ ପାଠଟୀକା କରିବା କ୍ରମେ ଶିଖିବା ଉଚିତ । ଉଚ୍ଚ ଶ୍ରେଣୀମାନଙ୍କରେ ନିତାନ୍ତ ଆବଶ୍ୟକ ସ୍ଥଳ ନ ହେଲେ, ଶିକ୍ଷକ ପାଠଟୀକା ଦେବା ଉଚିତ ନୁହେ । ସ୍ୱାଧୀନ ପାଠଟୀକାରେ ଛାତ୍ରର ମନୋବୃତ୍ତିର ବିକାଶ ହୁଏ ଏବଂ ସେ ପାଠଟୀକାର ଆବଶ୍ୟକ ଓ ଅନାବଶ୍ୟକ ଅଙ୍ଗ ମଧ୍ୟରେ ପାର୍ଥକ୍ୟ ବୁଝିପାରେ ।

ପାଠଟୀକାରେ ବିସ୍ତୃତ ବିବରଣ ରହିବା ଅନୁଚିତ । ସେଥିରେ କେବଳ ମୌଳିକ କଥାମାନ ସୂଚନା ଆକାରରେ ଲିପିବଦ୍ଧ ରହିବା ଉଚିତ । ଯାହା ପାଠ୍ୟପୁସ୍ତକରୁ ମିଳେ ନାହିଁ, ସେପରି ବିଷୟମାନ ପାଠଟୀକାରେ ନିଶ୍ଚୟ ରହିବ ।

ଛାତ୍ରମାନେ ନିଜ ନିଜ ଟୀକାଖାତାକୁ ମଝିରୁ ଦୁଇ ଭାଗରେ ବିଭକ୍ତ କରିବା ଉଚିତ । ବାମ ପାଖରେ ଚିତ୍ର, ମାନଚିତ୍ର, ସମୟ-ରେଖା, ଛବି, ଯୁଦ୍ଧସଜ୍ଜା, ଦୁର୍ଗ, ପୋଷାକ, ଅସ୍ତ୍ରଶସ୍ତ୍ର, ମୁଦ୍ରା ପ୍ରଭୃତି ଅଙ୍କିତ ରହିବ । ଦକ୍ଷିଣ ପାଖରେ ପଠିତ କଥାର ଆବଶ୍ୟକ ସଂକ୍ଷିପ୍ତ ସୂଚନା ବା ବିବରଣ ଟିପ୍ପଣୀ ଆକାରରେ ରହିବ ।

ଶିକ୍ଷକ ପ୍ରତିଦିନ ଯାହା ପଢ଼ାଇବେ, ତହିଁର କେତେକ ସ୍ଥୂଳସୂଚନା କଳାପଟାରେ ଲେଖିଦେବେ । ଛାତ୍ରମାନେ ସେତିକ ଟୀକା

ଖାତାରେ ଟିପିନେଇ ଶିକ୍ଷକଙ୍କ ଶିକ୍ଷାଦାନ ଅଗ୍ରସର ହେଉଥିବା ସଙ୍ଗେ ସଙ୍ଗେ ନିଜ ନିଜ ଟିପ୍ପଣୀ କରି ନେଉଥିବେ । ଛାତ୍ରମାନେ ଠିକ୍ ରୂପେ ପାଠଟୀକା କରୁଛନ୍ତି କି ନାହିଁ, ତାହା ଶିକ୍ଷକ ବେଳେ ବେଳେ ପରିଦର୍ଶନ କରିବେ । ଏହି କାର୍ଯ୍ୟ ସଫାସୁତରା ଓ ନିର୍ମଳ ରହିବ । ଅସାବଧାନ ଓ ଅଶୁଦ୍ଧ ପାଠଟୀକା ଶିକ୍ଷକ ଗ୍ରହଣ କରିବେ ନାହିଁ ।

ଶିକ୍ଷାଦାନକୁ ଫଳପ୍ରସୂ କରିବା ନିମନ୍ତେ ଛାତ୍ରମାନେ ସ୍ୱୟଂ କିଛି ନା କିଛି କାର୍ଯ୍ୟ କରିବା ଉଚିତ । ପାଠଶେଷରେ ମୌଳିକ ଉପାଦାନ, ସଂପୃକ୍ତ ଗଦ୍ୟପଦ୍ୟ ସାହିତ୍ୟ, ପ୍ରବନ୍ଧ ଇତ୍ୟାଦି ସମ୍ବନ୍ଧରେ ଆଲୋଚନା ଓ ପ୍ରଶ୍ନୋତ୍ତର, ଚିତ୍ରାଙ୍କନ, ମାନଚିତ୍ର ନିର୍ମାଣ, ଆଦର୍ଶ ଗଠନ, ନାଟକୀୟ ଆବୃତ୍ତି, ରଚନା ଲିଖନ, ବକ୍ତୃତାଦାନ, ସମାଲୋଚନାମୂଳକ ଯୁକ୍ତିତର୍କ, ସ୍ଥାନଦର୍ଶନ ଓ ପର୍ଯ୍ୟଟନ ପ୍ରଭୃତି ଛାତ୍ରର ଜ୍ଞାନକୁ ଦୃଢ଼ମୂଳ ଓ ସରସ କରେ ଏବଂ ଜ୍ଞାନକୁ ପରିପୁଷ୍ଟ ଓ ଚିରସ୍ଥାୟୀ କରେ ।



— ଛଅ —

# ଆଧୁନିକ ବିଭିନ୍ନ ନୂତନ ପଦ୍ଧତି

**ଡାଲଟନ ପଦ୍ଧତି**—ଆମେରିକାର ଡାଲଟନ ବିଦ୍ୟାଳୟରେ ଇତିହାସ ଅଧ୍ୟାପନା ଏକ ନୂଆ ପଦ୍ଧତି ନେଇଅଛି । ଅଧ୍ୟାପନା ଦୁଇ ଭାଗରେ ବିଭକ୍ତ ହୁଏ—ଶ୍ରେଣୀର ଛାତ୍ରମାନେ ପ୍ରତ୍ୟେକେ ପ୍ରଥମେ ସ୍ୱାଧୀନ ଅଧ୍ୟୟନ କରନ୍ତି, ଦ୍ୱିତୀୟରେ ଶିକ୍ଷକ ଶ୍ରେଣୀକୁ ମୌଖିକ ଶିକ୍ଷାଦାନ କରନ୍ତି । ମୌଖିକ ଶିକ୍ଷାଦାନ ସପ୍ତାହରେ ଥରେ ଅଧେ ହୁଏ । ଶିକ୍ଷକ ସେଥିରେ ଛାତ୍ରମାନଙ୍କର ସାପ୍ତାହିକ ସ୍ୱାଧୀନ ଅଧ୍ୟୟନର ବିଷୟକୁ ଆଲୋଚନା ସମାଲୋଚନା କରି ସଂଗଠନ କରନ୍ତି ।

ଛାତ୍ରମାନଙ୍କୁ ମାସକ ସକାଶେ ଗୋଟିଏ ନିର୍ଦ୍ଦିଷ୍ଟ କାର୍ଯ୍ୟ କରିବାକୁ ବା ଅଧ୍ୟୟନ କରିବାକୁ ଦିଆଯାଏ । ଶିକ୍ଷକ କେତେକ ପ୍ରଶ୍ନ ଓ ସୂଚନା ଦେଇ ତହିଁର ସମାଧାନ କରିବାକୁ ଏବଂ ଛବି, ମାନଚିତ୍ର ପ୍ରଭୃତି ଅଙ୍କନ ଓ ନାନାପ୍ରକାର ଗଠନ କରିବାକୁ ନିର୍ଦ୍ଦେଶ ଦିଅନ୍ତି । ଛାତ୍ର ନିଜ ଚେଷ୍ଟାରେ ଓ ସ୍ୱାଧୀନ ଭାବରେ ନିଜ ଇଚ୍ଛା ଅନୁସାରେ କାର୍ଯ୍ୟ କରେ । ମାସ ଶେଷରେ ଅଧୀତ ବିଷୟର ପରୀକ୍ଷା ହୁଏ । ଶିକ୍ଷାଗାରରେ ମାସଯାକ କାର୍ଯ୍ୟ ଚାଲିଥିବା ବେଳେ ଶିକ୍ଷକ କାର୍ଯ୍ୟର ଅଗ୍ରଗତି ପର୍ଯ୍ୟବେକ୍ଷଣ କରୁଥାନ୍ତି । ଯେତେବେଳେ

ଯେଉଁ ଛାତ୍ର ଶିକ୍ଷକଙ୍କଠାରୁ ସାହାଯ୍ୟ ଉପଦେଶ ଓ ପରାମର୍ଶ ଗ୍ରହନ୍ତି, ଶିକ୍ଷକ ତାହା ଦିଅନ୍ତି । ଶିକ୍ଷାଗାରରେ ଅନେକ ପୁସ୍ତକ ଓ ଅନ୍ୟାନ୍ୟ ଶିକ୍ଷା ଉପକରଣ ରହିଥାଏ । ଛାତ୍ରମାନେ ସେସମସ୍ତର ସଦ୍ ବ୍ୟବହାର କରନ୍ତି ।

ଏପ୍ରକାର ସ୍ୱାଧୀନ ଅଧ୍ୟୟନରେ ଛାତ୍ରର ଅଧ୍ୟବସାୟ, ଆଗ୍ରହ ଆତ୍ମନିର୍ଭରଶୀଳତା ଓ ଆତ୍ମ ବିଶ୍ୱାସ ଜାତ ହୁଏ । ସ୍ୱାଧୀନ ଅଧ୍ୟୟନରେ କୃତକାର୍ଯ୍ୟତା ଓ ଫଳ ଲାଭ କରି ଛାତ୍ର ମନରେ ଆନନ୍ଦ ଲାଭ କରେ ।

ଢାକାର ଆର୍ମେନିଟୋଲା ହାଇସ୍କୁଲରେ ଏହି ପଦ୍ଧତିର ପରୀକ୍ଷା ସଫଳ ହୋଇଥିଲା । କଲିକତାର ହିନ୍ଦୁ ବିଦ୍ୟାଳୟ ଓ ବିଭିନ୍ନ ମାନର ଟୋକନା ହାଇସ୍କୁଲରେ ଏହି ପଦ୍ଧତିର ପରିବର୍ତ୍ତନ କରି ଅର୍ଥାତ୍ ସ୍ୱାଧ୍ୟାୟ ସଙ୍ଗେ ବକ୍ତୃତା ପଦ୍ଧତି ମିଶାଇ ପରୀକ୍ଷା ହୋଇଥିଲା ଏବଂ ଭଲ ଫଳ ମିଳିଅଛି । ଇଂଲଣ୍ଡରେ ଡାଲଟନ ପଦ୍ଧତିର କେତେକ ପରିବର୍ତ୍ତନ କରା ଯାଇଅଛି ଏବଂ ସେଠାରେ ଶ୍ରେଣୀଶିକ୍ଷାଦାନକୁ ବାଦ ଦିଆ ଯାଇନାହିଁ ।

ଭାରତରେ ଡାଲଟନ ପଦ୍ଧତିର ସୁଫଳ ଆଶା କରିବାରେ କେତେକ ବାଧା ଅଛି । ଭାରତୀୟ ଭାଷାମାନଙ୍କରେ ଉପଯୁକ୍ତ ପୁସ୍ତକର ଅଭାବ, ଶିକ୍ଷାଉପକରଣର ବିରଳତା ଓ ବିଶେଷତଃ ଉପଯୁକ୍ତ ଶିକ୍ଷକଙ୍କର ଅଭାବ ସେହି ବାଧା ମଧ୍ୟରେ ପ୍ରଧାନ । ଶିକ୍ଷକମାନଙ୍କୁ ଯଥେଷ୍ଟ ଦରମା ନ ଦେବା ପର୍ଯ୍ୟନ୍ତ ଓ ଟ୍ୟୁଶନ ପ୍ରଥା ବନ୍ଦ ନ ହେବା ପର୍ଯ୍ୟନ୍ତ ଭାରତରେ ଡାଲଟନ ପଦ୍ଧତି ପ୍ରୟୋଗ କରାଯାଇ ପାରିବ ନାହିଁ । କେତେକ ଶ୍ରେଣୀରେ ଏବଂ ଡାଲଟନ ପଦ୍ଧତିର

କେତେକ ପରିବର୍ତ୍ତନ କରି ଆମ ଦେଶରେ ଏହାର ପ୍ରଚଳନ ପରୀକ୍ଷା କରି ଯାଇପାରିବ । ସେଥି ସକାଶେ ଉପଯୁକ୍ତ ଲାଇବ୍ରେରୀ ଓ ଶିକ୍ଷୋପକରଣ ପ୍ରଥମେ ଆବଶ୍ୟକ ହେବ ଏବଂ ସୁଯୋଗ୍ୟ ଶିକ୍ଷକ ନିୟୋଗ କରିବାକୁ ହେବ ।

**ବେଡେଲ ପଦ୍ଧତି** – ସୁଇଜରଲେଣ୍ଡର ବେଡେଲ ନାମକ ସ୍ଥାନରେ ଥିବା ବିଦ୍ୟାଳୟରେ ଜଣେ ଜର୍ମାନ ଶିକ୍ଷକ ହେଉର ହେର୍ମାନ ଝିବଲର ଡାଲଟନ ପଦ୍ଧତିର କେତେକ ପରିବର୍ତ୍ତନ କରି ସେଠାରେ ପ୍ରୟୋଗ କରିଛନ୍ତି । କିଛିକାଳ ଗଭୀର ଅଧ୍ୟୟନ ପରେ ଛାତ୍ରମାନଙ୍କୁ କିଛିକାଳ ବିରତି ଓ ବିଶ୍ରାମ ଦିଆଯାଏ । ଛାତ୍ରମାନେ ସପ୍ତାହର ନିର୍ଦ୍ଦିଷ୍ଟ କାଳ ଇତିହାସର ପ୍ରଗାଢ଼ ଆଲୋଚନା ବା ଅଧ୍ୟୟନ କଲାପରେ ପରବର୍ତ୍ତୀ ସପ୍ତାହ ବା ପକ୍ଷରେ ଅନ୍ୟାନ୍ୟ ବିଷୟର ସ୍ୱେଚ୍ଛା-ପ୍ରକାର ଅଧ୍ୟୟନ କରନ୍ତି । ଫଳରେ ଟାଇମଟେବଲ ସାପ୍ତାହିକ ନ ହୋଇ ପାକ୍ଷିକ ହୁଏ ।

ଦୈନିକ ପିରିଅଡ଼ମାନଙ୍କର ଦୈର୍ଘ୍ୟ ଘଣ୍ଟାକରୁ ପୌନେ ଦୁଇ ଘଣ୍ଟା ପର୍ଯ୍ୟନ୍ତ ରହେ । ସପ୍ତାହରେ ଇତିହାସ ପାଇଁ ଦେଢ଼ ଘଣ୍ଟିଆ ତିନି ପିରିଅଡ଼ ରହେ । ପରବର୍ତ୍ତୀ ସପ୍ତାହରେ ଇତିହାସ ପାଇଁ ଆଦୌ ପିରିଅଡ଼ ରହେ ନାହିଁ ।

ବେଡେଲ ପଦ୍ଧତିରେ ଶ୍ରେଣୀ ଅଧ୍ୟାପନା ପ୍ରଣାଳୀ ରହିଅଛି ଏବଂ ତାହା ସଂପୂର୍ଣ୍ଣ ରୂପେ ବାଦ ଦିଆ ଯାଇନାହିଁ । ଶିକ୍ଷକ କିଛିକାଳ କଠିନତର ଆଲୋଚନାର ମୌଖିକ ଅଧ୍ୟାପନାରେ ବିନିଯୋଗ କରନ୍ତି । କିନ୍ତୁ ଅଧିକ ସମୟ ଛାତ୍ରମାନଙ୍କୁ ସ୍ୱାଧୀନ ଅଧ୍ୟୟନ ନିମନ୍ତେ ଛାଡ଼ି ଦିଅନ୍ତି । ଡାଲଟନରେ ଛାତ୍ର ନିଜ ନିର୍ବାଚନରେ

ବିଷୟ ବା ପ୍ରସଙ୍ଗ ସ୍ୱାଧୀନ ଅଧ୍ୟୟନ କରେ, ବେଡେଲରେ ଶିକ୍ଷକ ବିଷୟ ବା ପ୍ରସଙ୍ଗ ନିର୍ବାଚନ କରନ୍ତି । ଶନିବାର ସକାଳେ ଛାତ୍ର-ମାନେ ବ୍ୟକ୍ତିଗତ ଭାବରେ ନିଜ ଇଚ୍ଛା ଓ ନିର୍ବାଚନରେ ସ୍ୱାଧୀନ ଅଧ୍ୟୟନ କରନ୍ତି ଏବଂ ଯେକୌଣସି ପ୍ରସଙ୍ଗ ଅଧ୍ୟୟନ ବା ଆଲୋଚନା କରିପାରନ୍ତି । ଅନ୍ୟଥା ବେଡେଲ ପଦ୍ଧତି ଡାଲ୍‌ଟନ ପଦ୍ଧତିର ରୂପାନ୍ତର ମାତ୍ର ।

**ସାଲ୍‌ସବେରି ଯୋଜନା**—ଇଂଲଣ୍ଡ ଅନ୍ତଃପାତୀ ସାଲ୍‌ସବେରିର ବିଶପ ୱାର୍ଡସ୍‌ୱର୍ଥ ବିଦ୍ୟାଳୟର ହେଡ୍‌ମାଷ୍ଟର ହେପଲ୍‌ଡ୍ ୧୯୨୮ ପରେ ସେଠାରେ ଏକ ନୂତନ ଯୋଜନା ପରୀକ୍ଷା କରିଥିଲେ ।

ହେପଲ୍‌ଡ୍ ବୁଝିପାରିଥିଲେ, ସାନ ସାନ ପିଲାଙ୍କ ପକ୍ଷରେ ଇତିହାସ ଏକ କଠିନ ଓ ଦୁର୍ବୋଧ ବିଷୟ । ତେଣୁ ସେ ସାନ ପିଲାଙ୍କୁ କେତେକ କୌଶଳ ଶିକ୍ଷା ଦେବାର ପ୍ରଥମେ ଯତ୍ନ କରି-ଥିଲେ । ପୁସ୍ତକରୁ କେତେକ କୌତୁକିଆ ଉପାଦାନ ସଂଗ୍ରହ କରନ୍ତି, ତାହାକୁ ସଜାଇ ସେବିଷୟରେ ପିଲାମାନେ କିପରି ଯଥାଯଥ ଆକାରରେ ଚିନ୍ତା ଓ ଆତ୍ମପ୍ରକାଶ କରିବେ, ସେହି କୌଶଳ ଓ କୃତିତ୍ୱ ସେମାନଙ୍କୁ ଶିକ୍ଷା ଦିଅନ୍ତି ।

ହେପଲ୍‌ଡ୍ କହନ୍ତି, ପ୍ରାଥମିକ ଅବସ୍ଥାରେ (ଅର୍ଥାତ୍ ୧୧ ରୁ ୧୪-୧୫ ବର୍ଷ ବୟସରେ) ଇଂରାଜୀ, ଇତିହାସ ଓ ଭୂଗୋଳ ବିଷୟ-ମାନଙ୍କରେ ଛାତ୍ରମାନଙ୍କୁ ବିଶେଷଜ୍ଞମାନଙ୍କଦ୍ୱାରା ଶିକ୍ଷା ଦିଆଇବା ଅନୁଚିତ ଓ ଶକ୍ତି ଓ କାଳକ୍ଷୟ ମାତ୍ର । ସେହି ବୟସରେ ଯେ କେହି ଜଣେ ଶିକ୍ଷକ ସେସମସ୍ତ ବିଷୟ ଗୋଟିଏ ଶ୍ରେଣୀରେ ଶିକ୍ଷା

ଦେବ । ଇଂରାଜୀ, ଇତିହାସ, ଭୂଗୋଳ, ବୈଷୟିକ ନୀତି (Current Affairs) ଓ ଶାସନସଂସ୍ଥାକୁ ✻ (Politics) ଗୋଟିଏ ବିଷୟ ରୂପେ ଜ୍ଞାନ କରି ସେହି ଶିକ୍ଷକ ସେହି ଶ୍ରେଣୀମାନଙ୍କରେ ଶିକ୍ଷା ଦେବେ । ଉପର ଶ୍ରେଣୀମାନଙ୍କୁ ଗଲେ ଯାଇ, ଛାତ୍ରମାନେ ବିଶେଷଜ୍ଞମାନଙ୍କଠାରୁ ସେସବୁ ବିଷୟରେ ବିଶେଷ ଜ୍ଞାନ ଲାଭ କରିବେ ।

ହେଫଲଡ୍ସ୍ ଇଂରାଜୀ (ଭାଷାଶିକ୍ଷା), ଇତିହାସ ଓ ଭୂଗୋଳ ମଧ୍ୟରେ ଏକ ସାମାନ୍ୟ କଥା ବା ସାଧାରଣ ସାମଞ୍ଜସ୍ୟ ନିରୂପଣ କଲେ ଏବଂ ନାନାପ୍ରକାର ଉପାଦାନ ପୁସ୍ତକରୁ ଓ ପାରିପାର୍ଶ୍ୱିକ ବେଷ୍ଟନୀରୁ ସଂଗ୍ରହ କରି ସେସମସ୍ତ ବିଷୟରେ ଧାରାବାହିକ ଆକାରରେ ଚିନ୍ତନ ଓ ଭାବପ୍ରକାଶ କରିବା କୌଶଳ ଓ କୃତିତ୍ୱ ଛାତ୍ରମାନଙ୍କୁ ଶିକ୍ଷା ଦେଲେ । ଏହି ଶିକ୍ଷାରେ ଛାତ୍ରମାନଙ୍କର ୭ ବର୍ଷ ଅତୀତ ହେଲା । ଏହି ସାତ ବର୍ଷକୁ ସେ ତିନୋଟି ବିଭାଗରେ ବିଭକ୍ତ କଲେ :—

ପ୍ରଥମ ବିଭାଗ – ପୃଥିବୀର ଇତିହାସ ଓ ପାରିପାର୍ଶ୍ୱିକ ଶିକ୍ଷା । (ଏଥିରେ ପୃଥିବୀର ଇତିହାସ, ଭୂଗୋଳ ଏବଂ ପୃଥିବୀର ପ୍ରଧାନ ପ୍ରଧାନ ଘଟଣା ରହିଲା) ।

✻ ଆମ ଦେଶରେ ବୈଷୟିକ ନୀତିର ସମାନ ଓ ସମାନ୍ତର ବିଷୟ ପାରିପାର୍ଶ୍ୱିକ ଶିକ୍ଷା ଏବଂ ଶାସନସଂସ୍ଥାର ସମାନ ଓ ସମାନ୍ତର ଶିକ୍ଷା ସିଭିକ୍ସ ହୋଇପାରେ ।

ଦ୍ୱିତୀୟ ବିଭାଗ – ଜାତୀୟ ସଂସ୍କୃତି ଓ ପାରିପାର୍ଶ୍ୱିକ ଶିକ୍ଷା । (ଏଥିରେ ଜାତୀୟ ସାହିତ୍ୟ ଉପରେ ଭିତ୍ତି କରି ଜାତୀୟ ଇତିହାସ ଓ ଭୂଗୋଳ ଶିକ୍ଷା ଦେବାର ବ୍ୟବସ୍ଥା ଥିଲା । )

ତୃତୀୟ ବିଭାଗ – ଆଧୁନିକ ଯୁଗର ବିବରଣ ଏବଂ ତାହାଁର ବିକାଶ । ପୃଥିବୀର ବିଭିନ୍ନ ସଂସ୍ଥା ଓ କାର୍ଯ୍ୟ ଏବେ କିପରି ଚାଲେ (ଇକ-ନମିକ୍ସ), ମନୁଷ୍ୟସମାଜର (ବିଶେଷତଃ ନିଜ ଦେଶର) ଶାସନ କିପରି ଚାଲେ (ପାଲିଟିକ୍ସ), ଆଧୁନିକ ସମାଜର ପରିସ୍ଥିତି କିପରି ପର୍ଯ୍ୟବସିତ ହୋଇଅଛି (ଇତିହାସ ଓ ଭୂଗୋଳ), ଏବଂ ସାମାଜିକ ପ୍ରସଙ୍ଗମାନ (ଯଥା, ଗ୍ରାମଯୋଜନା, ମୁଦ୍ରାଯନ୍ତ୍ର, ରେଡ଼ିଓ, ସିନେମା ଇତ୍ୟାଦି) ଏଥିରେ ଶିକ୍ଷା ଦେବାର ବ୍ୟବସ୍ଥା ଥିଲା । ରଚନା ଓ ପ୍ରବନ୍ଧ ସାହାଯ୍ୟରେ ଏଥିର ଅଧ୍ୟାପନା ପ୍ରଧାନତଃ କରା ଯାଉଥିଲା ।

ହେପଲ୍‌ଡଙ୍କ ସଙ୍ଗେ ଅନେକ ଏକମତ ହେବେ ନାହିଁ, କିନ୍ତୁ ତାଙ୍କ ମତରେ ବିଶେଷ ଯାଥାର୍ଥ୍ୟ ଅଛି। ଦେଶରେ ପ୍ରବର୍ତ୍ତିତ ଇତି-ହାସ ଅଧ୍ୟାପନାରେ ଯେପରି ପୁନଃପୌନିକ ପୁନରାବୃତ୍ତି ହେଉଅଛି ଏବଂ ନିମ୍ନ ଶ୍ରେଣୀମାନଙ୍କରେ ତାହାଁର ଅଧ୍ୟାପନାରେ ଯେପରି ନିଷ୍ଫଳ ଲାଭ ଓ କାଳକ୍ଷୟ ମାତ୍ର ଘଟୁଅଛି, ହେପଲ୍‌ଡଙ୍କ ମତ ଗ୍ରହଣ ଓ ବିଚାର କରି ସିଲାବସ ପରିବର୍ତ୍ତନ କରିବା ଆମ ଦେଶ ପକ୍ଷରେ କଲ୍ୟାଣକର ହେବ ।



— ସାତ —

# କର୍ମମୂଳକ ଶିକ୍ଷା

ଶିକ୍ଷା କର୍ମମୂଳକ ହେଲେ, ତାହା ଶିଶୁ ପକ୍ଷରେ ଆଶୁଫଳ-ପ୍ରଦ, ଦୃଢ଼ମୂଳ ଓ ଚିରସ୍ଥାୟୀ ହୁଏ । ଶିଶୁର ମନ, ଇନ୍ଦ୍ରିୟ ବା ଅଙ୍ଗପ୍ରତ୍ୟଙ୍ଗ ସାହାଯ୍ୟରେ ଶିକ୍ଷାକୁ କର୍ମମୂଳକ କରଯାଇ ପାରେ । କ୍ରୀଡ଼ା, ଚିତ୍ରାଙ୍କନ, ନିର୍ମାଣ, ଅଭିନୟ, ରଚନା, ଗଠନ ପ୍ରଭୃତି କର୍ମର ଅଙ୍ଗୀଭୂତ ।

ସାନ ଶିଶୁମାନଙ୍କୁ ରଙ୍ଗିନ କାଗଜରେ ମନୁଷ୍ୟ, ପଶୁପକ୍ଷୀ, ନୌକା ପ୍ରଭୃତିର ଗଠନ କରିବାକୁ ଦେଲେ, ସେମାନେ ବିଶେଷ ଆନନ୍ଦ ପାନ୍ତି । କାଠ, କାଦୁଅ, ପ୍ଲାଷ୍ଟିକ ପ୍ରଭୃତିରେ ନାନାପ୍ରକାର ମୂର୍ତ୍ତି ନିର୍ମାଣ କରିବା, ବାଲି ଓ କାଗଜରେ ଅଙ୍କନ କରିବା, ନିର୍ମିତ ମୂର୍ତ୍ତି ଓ ଚିତ୍ରଗୁଡ଼ିକରେ ରଙ୍ଗ ଚଢ଼ାଇବା ପ୍ରଭୃତି ସେମାନଙ୍କର ପ୍ରୀତିକର ହୁଏ । ଛୁଣ୍ଡାକନା ସିଲାଇ କରି ସେମାନେ ନାନାପ୍ରକାର ପିତୁଳା ଗଠନ କରି ପାରିବେ ।

ପଠିତ ଇତିହାସର ବିବରଣୀରୁ ସେମାନେ ପୂର୍ବୋକ୍ତ ଉପକରଣମାନଙ୍କ ସାହାଯ୍ୟରେ ନାନାପ୍ରକାର ହାତକାମ ଚେଷ୍ଟା କରିବେ । ଏପ୍ରକାର ହାତକାମ ମଧ୍ୟରେ ପ୍ରାଚୀନ ଗୁମ୍ଫା, ଗୁମ୍ଫାବାସୀ, ଅସ୍ତ୍ରଶସ୍ତ୍ର, ଶିକାର ଜନ୍ତୁ, ଅଳଙ୍କାର, ମୃତ୍ପାତ୍ର, ଆସନ, ବାସନ, ଗୃହ, ମନ୍ଦିର, ଦୁର୍ଗ, ନୌକା, ଜାହାଜ, ଯାନବାହନ, ଉଡ଼ାଜାହାଜ, ରେଳ ପ୍ରଭୃତି ନାନାପ୍ରକାର ଗଠନ, ଅଙ୍କନ ଉଲ୍ଲେଖ କରି ଯାଇ-

ପାରେ । ଶିକ୍ଷକ ସେଗୁଡ଼ିକ ସମ୍ବାଦ ରଖିଲେ ଶିଶୁମାନେ ବିଶେଷ ଉତ୍ସାହିତ ହେବେ । ସ୍ଥାନ ଅଭାବରେ ଅପେକ୍ଷାକୃତ ଉତ୍କୃଷ୍ଟ ଜନିଷମାନ ସମ୍ବାଦ ରଖାଯିବ । ଉଚ୍ଚତର ଶ୍ରେଣୀମାନଙ୍କରେ ଅଭିନୟ, ରଚନା ଓ ପଠନ କାର୍ଯ୍ୟ ଅଧିକ କରାଯିବ ।

ଶିଶୁମାନଙ୍କୁ ମୁଦ୍ରିତ ସୀମାମାନଚିତ୍ର ଦେଇ, ସେଥିରେ ଦେଶ, ପ୍ରଦେଶ, ସ୍ଥାନ ପ୍ରଭୃତି ଦେଖାଇବା ପାଇଁ ଓ ରଙ୍ଗ ଦେବା ପାଇଁ ଦିଆଯିବ । ଅପେକ୍ଷାକୃତ ବଡ଼ ଶ୍ରେଣୀର ଛାତ୍ରମାନେ ନିଜ ହାତରେ ସୀମାମାନଚିତ୍ର ଅଙ୍କନ କରି ପାରିବେ । ଶିକ୍ଷକ କଳାପଟାରେ ମାନଚିତ୍ର ଅଙ୍କନ କରିବା ବେଳେ ଛାତ୍ରମାନେ ନିଜ ନିଜ ମାନଚିତ୍ରରେ ଶିକ୍ଷକଙ୍କ ଅନୁକରଣ କରିପାରିବେ । ରାଜ୍ୟସୀମା, ଯୁଦ୍ଧକ୍ଷେତ୍ରର ଚିତ୍ର, ଅଭିଯାନପଥ, ଜାତୀୟ ସଡ଼କ, ଜଳପଥ, ପ୍ରଭୃତି ସେଥିରେ ଦେଖାଯାଇ ପାରିବ । ବାଛି ବାଛି ଭଲ ଚିତ୍ରମାନ ଶ୍ରେଣୀରେ ଝୁଲାଇଲେ ଶିଶୁମାନେ ଉତ୍ସାହିତ ହେବେ ।

ଐତିହାସିକ ଘଟଣାମାନ ଶିକ୍ଷକ ଶିଶୁମାନଙ୍କ ଉପଯୋଗୀ ନାଟକୀୟ ଭାଷାରେ ଲେଖିଦେଲେ, ଶିଶୁମାନେ ତହିଁର ଅଭିନୟ କରିବେ । ଉଚ୍ଚ ଶ୍ରେଣୀରେ ଛାତ୍ରମାନେ ନିଜେ ସେହି ରଚନା କରି-ପାରିବେ ଏବଂ ଶିକ୍ଷକ ତାହା ସଂଶୋଧନ କରିବେ । ସାନ ବଡ଼ ସମସ୍ତ ଛାତ୍ରଙ୍କ ପକ୍ଷରେ ଅଭିନୟ ଚିତ୍ତାକର୍ଷକ ହୁଏ । ଅଭିନୀତ ଐତିହାସିକ ବିବରଣୀ ଛାତ୍ରର ସ୍ମୃତିରେ ଦୀର୍ଘକାଳ ରହେ ଏବଂ ଜୀବନ୍ତ ପରି ପ୍ରତୀତ ହୁଏ ।

ଆବୃତ୍ତି ମଧ୍ୟ ଏକ ପ୍ରକାର କର୍ମ ମଧ୍ୟରେ ଗଣନୀୟ । ଶିକ୍ଷକ ଗୋଟିଏ ବର୍ଣ୍ଣନା କରିବା ପରେ ଛାତ୍ରମାନଙ୍କୁ ତହିଁର ଆବୃତ୍ତି

କରିବାକୁ ଦେବେ । କିନ୍ତୁ, ଗୃଣକ୍ୟଙ୍କ ବିଷୟ କହି, ଏପ୍ରକାର ଆଦେଶ ନ ଦେଇ ସେମାନଙ୍କୁ ଚନ୍ଦ୍ରଗୁପ୍ତଙ୍କ ବିଷୟ ବିଭିନ୍ନ ପ୍ରଶ୍ନ ଦ୍ୱାରା ତହିଁର ଆବୃତ୍ତି କରାଇବେ । ଗୃଣକ୍ୟ କାହିଁକି ନନ୍ଦ ରାଜାଙ୍କର କାହିଁ ପାଉଥିଲେ ? ସେ କିପରି ନନ୍ଦ ରାଜାଙ୍କ ଉପରେ ପ୍ରତିଶୋଧ ନେଲେ ? ସେ ଚନ୍ଦ୍ରଗୁପ୍ତଙ୍କୁ କିପରି ସାହାଯ୍ୟ କଲେ ? ଗୃଣକ୍ୟ ନ ଥିଲେ, ଚନ୍ଦ୍ରଗୁପ୍ତ କ'ଣ କାର୍ଯ୍ୟ କରି ପାରି ନ ଥାନ୍ତେ ? ଏପ୍ରକାର ପ୍ରଶ୍ନଦ୍ୱାରା ଛାତ୍ରମାନଙ୍କର ଅଧିକ ଉପକାର ହୁଏ ।

ବେଳେ ବେଳେ ଶ୍ରେଣୀରେ ଐତିହାସିକ କବିତାର ମଧ୍ୟ ଆବୃତ୍ତି କରାଯାଇ ପାରିବ । ରାଧାନାଥଙ୍କ ରଚିତ "ଶିବାଜୀଙ୍କ ଉଦ୍ଦୀପ୍ତବାକ୍ୟ", "ଅମର୍ଷୀଙ୍କ ଉଦ୍ଦୀପ୍ତ ବାଣୀ" ଏପ୍ରକାର ରଚନାର ଦୃଷ୍ଟାନ୍ତ । ଶିକ୍ଷକ ପାରିଲେ ଏପ୍ରକାର କେତେକ ଉପଯୋଗୀ କବିତା ଓ ବ୍ୟଙ୍ଗକବିତା ନିଜେ ପ୍ରଣୟନ କରି ପାରିବେ ।

ଫୁଟବଲରେ ପବନ ଭର୍ତ୍ତି କରିବା ପରି ଛାତ୍ରର ମନ ମଧ୍ୟରେ କେତେକ ଐତିହାସିକ ତଥ୍ୟ ପୂରାଇ ଦେବା ପ୍ରାଚୀନ ଶିକ୍ଷାପଦ୍ଧତିକୁ ଏବେ ସାଧାରଣରେ ସମସ୍ତେ ନାପସନ୍ଦ କରୁଛନ୍ତି । ଛାତ୍ର କେତେ ଐତିହାସିକ ଘଟନା ମନେ ରଖି ପାରିଛି, ଏକଥା ଇତିହାସ ଜ୍ଞାନର ପରିମାପକ ବୋଲି ଏବେ ବିବେଚିତ ହେଉ-ନାହିଁ । ଛାତ୍ରର ବୋଧଶକ୍ତି ଜାତ ହୋଇଛି କି ନାହିଁ, ସେ ଚିନ୍ତା କରିପାରେ କି ନାହିଁ, ନାନାପ୍ରକାର ବିଭିନ୍ନ ସମସ୍ୟାର ଭଲମନ୍ଦ ବିଚାର କରି ସିଦ୍ଧାନ୍ତରେ ଉପନୀତ ହୋଇପାରେ କି ନାହିଁ, ଏହା ହିଁ ତାହାର ଇତିହାସ ଅଧ୍ୟୟନ ଓ ଇତିହାସ ଜ୍ଞାନର ମାନଦଣ୍ଡ ।

—୦—

— ଆ୦ —

# ମୌଳିକ ଉପାଦାନ (Source Method)

ସମସାମୟିକ ଐତିହାସିକ ଓ ପର୍ଯ୍ୟଟକମାନଙ୍କର ଲିଖିତ ପ୍ରାଚୀନ ପୁସ୍ତକ, ତାମ୍ରଫଳକ, ଶିଳାଲିପି ପ୍ରଭୃତିରୁ ଇତିହାସ ସଙ୍ଗ୍ରହ କରାଯାଏ । ସେଗୁଡ଼ିକ ଶ୍ରେଣୀରେ ଛାତ୍ରମାନଙ୍କ ହାତରେ ଦେଇ ଇତିହାସ ଅଧ୍ୟାପନା କଲେ, ସେମାନଙ୍କର କୌତୂହଳ ଓ ଆଗ୍ରହ ବଢ଼େ, ଶିକ୍ଷା ଦୃଢ଼ମୂଳ ହୁଏ, କଳ୍ପନା ଶକ୍ତିର ଉଦ୍ରେକ ହୁଏ ଏବଂ ଶିକ୍ଷକଙ୍କୁ ବର୍ଣ୍ଣନାରୁ ଅବ୍ୟାହତି ମିଳେ । ଆମ ଦେଶରେ ମୌଳିକ ଉପାଦାନର ସଂଖ୍ୟା ଅଳ୍ପ; ଯାହା ଅଛି, ତହିଁର ଭାଷା ଛାତ୍ର-ମାନଙ୍କର ଉପଯୋଗୀ ନୁହେ ଏବଂ ବିଶେଷତଃ ଇଂରାଜୀ, ସଂସ୍କୃତ ଓ ପାଲି ଭାଷାରେ ଅଛି । ତଥାପି ସେଗୁଡ଼ିକ ଶ୍ରେଣୀରେ ବ୍ୟବହାର କରିବାକୁ ହେବ । ବାଛି ବାଛି ଐତିହାସିକ ଆବଶ୍ୟକ ଅଂଶମାନ ଛାତ୍ରମାନଙ୍କର ଉପଯୋଗୀ ଭାଷାରେ ଶିକ୍ଷକ ନିଜେ ଅନୁବାଦ କରି ରଖିବେ । ସେଗୁଡ଼ିକ ବିଚାର କରି ଉଚ୍ଚ ଉଚ୍ଚ ଶ୍ରେଣୀମାନଙ୍କରେ ପ୍ରୟୋଗ କରିବାକୁ ହେବ, ନିମ୍ନତମ ଶ୍ରେଣୀରେ ଉପାଦାନ ବ୍ୟବହାରର ଉପଯୋଗୀ ନୁହେ । ଉପାଦାନର ବ୍ୟବହାରରୁ ଯେଉଁ ଉପକାର ମିଳେ, ସାଧାରଣ ପାଠ୍ୟପୁସ୍ତକରୁ ମିଳିବା ଅସମ୍ଭବ । ବେଳେ ବେଳେ ଉପାଦାନ ପରସ୍ପର ବିରୋଧୀ ମତ ବ୍ୟକ୍ତ କରନ୍ତି; ଏପରି ଉପାଦାନରୁ ସତ୍ୟମୂଳକ ସିଦ୍ଧାନ୍ତରେ ଉପନୀତ ହେବା ନିମନ୍ତେ

ଛାତ୍ରର ଧୀ ଓ ବିଚାର ଶକ୍ତିର ବିଶେଷ ତୁଳନା କରିବା ଆବଶ୍ୟକ ହୋଇଥାଏ । ସେହି ଅଭ୍ୟାସ ତାକୁ ପରବର୍ତ୍ତୀ ଜୀବନରେ ସମଧିକ ସାହାଯ୍ୟ କରେ ।

ଶିକ୍ଷକ ଉପାଦାନର ଆବଶ୍ୟକ ଅଂଶ ବା ଅନୁଚ୍ଛେଦମାନ ମୁଦ୍ରାଯନ୍ତ୍ର ବା ସାଇକ୍ଲୋଷ୍ଟାଇଲ ଯନ୍ତ୍ର ସାହାଯ୍ୟରେ ଛାପି ନେଇ ପାରିବେ : ଅପେକ୍ଷାକୃତ ଆକାରରେ କ୍ଷୁଦ୍ର ଅଂଶମାନ କଳା-ପଟାରେ ଲେଖି ଦେଇ ଛାତ୍ରମାନଙ୍କୁ ନିଜ ନୋଟ୍ ଖାତାର ବାମ ଅର୍ଦ୍ଧାଂଶରେ ଉତାରି ନେବାକୁ କହିବେ । ଭାଷା ଓ ବିଷୟ ସରଳ ଥିଲେ, ଶ୍ରେଣୀରେ ଏକାଧିକ ଥର ମୌଖିକ ପଢ଼ିଦେବେ ।

ଶ୍ରେଣୀର ପ୍ରତ୍ୟେକ ଛାତ୍ରକୁ ଗବେଷକରେ ପରିଣତ କରିବା ଉପାଦାନ ବ୍ୟବହାରର ଉଦ୍ଦେଶ୍ୟ ନୁହେଁ, କିନ୍ତୁ ଛାତ୍ରମାନେ ତାହାର ବ୍ୟବହାରରୁ ନିଜ ସିଦ୍ଧାନ୍ତ ବା ଇତିହାସର ସତ୍ୟ ଘଟଣା ଆବିଷ୍କାର କରି ପର୍ଯ୍ୟାପ୍ତ ଆନନ୍ଦ ଉପଭୋଗ କରନ୍ତି ଏବଂ ଭାରତର ଇତିହାସ ଏପ୍ରକାର ଉପାଦାନରୁ କିପରି ସଂକଳନ କରା ଯାଇଅଛି, ସେ-ବିଷୟରେ ଧାରଣା କରିପାରନ୍ତି । ଉପାଦାନର ସତ୍ୟତା କାହିଁକି ଓ କେତେ ପରିମାଣରେ ବିଶ୍ୱାସ କରାଯିବ, ସେବିଷୟରେ ନିଜ ବିଚାରର ପ୍ରୟୋଗ କରିବାକୁ ମଧ୍ୟ ସେମାନେ ଶିକ୍ଷା କରନ୍ତି । ଜଣେ ପ୍ରତ୍ୟକ୍ଷ ଦର୍ଶକ ଯେଉଁ ଘଟଣା ବର୍ଣ୍ଣନା କରିଛନ୍ତି, ଜଣେ ଶ୍ରୋତା ଯଦି ତାହା ବର୍ଣ୍ଣନା କରନ୍ତି, ପ୍ରଥମ ବ୍ୟକ୍ତିଙ୍କ ବର୍ଣ୍ଣନା ଅଧିକ ବିଶ୍ୱାସ୍ୟ ହେବ; ହଲ୍‌ୱେଲ ସାହେବ ଅନ୍ଧକୂପ ହତ୍ୟାର ଯେଉଁ ବିବରଣମାନ ଦେଇଛନ୍ତି, ତାହାକୁ କାହିଁକି ବିଶ୍ୱାସ କରାଯିବ ନାହିଁ ଏବଂ ତାହା ନିର୍ଣ୍ଣୟ କରିବା ନିମନ୍ତେ ଅନ୍ୟ କି ପ୍ରୟାସ କରାଯିବ; ଅଶୋକଙ୍କ

ଅନୁଶାସନରେ ସେ ନିଜ ସମ୍ବନ୍ଧରେ ଅଭିବ୍ୟକ୍ତ କରିଥିଲେ ମଧ୍ୟ ତହିଁରେ ପୂର୍ଣ୍ଣ ସତ୍ୟର ମାତ୍ରା ଅଛି, ସେଥିସକାଶେ ତାଙ୍କ ଉଦ୍ଦେଶ୍ୟ, ମାନସିକ ଗଠ ଓ ପ୍ରଚେଷ୍ଟା ଙ୍କ ପତ୍ରମାଣରେ ଅନୁଧ୍ୟାନ କରିବାକୁ ହେବ; ମେଗାସ୍ଥିନିସଙ୍କ ଭରତ ବିବରଣୀରେ ସେ କାହିଁକି ପ୍ରମାଦ-ପୂର୍ଣ୍ଣ ବର୍ଣ୍ଣନା କରିଛନ୍ତି, ତହିଁର କାରଣ ଖୋଜିବାକୁ ହେବ; ଏ ସମସ୍ତ ବିଚାର କରି ସିଦ୍ଧାନ୍ତରେ ଉପନୀତ ହେବାରେ ଛାତ୍ର-ମାନଙ୍କର କଳ୍ପନା, ବୁଦ୍ଧିବୃତ୍ତି ଓ ବିଚାର ଶକ୍ତିର ବିଶେଷ ବ୍ୟାୟାମ ହୁଏ ଏବଂ ସେମାନେ ପ୍ରକୃତ ଓ ପ୍ରତ୍ୟକ୍ଷ ଶିକ୍ଷା ଲାଭ କରନ୍ତି ।

ମୌଳିକ ଉପାଦାନରୁ ଛାତ୍ରମାନଙ୍କର ବିଷୟ ସମ୍ବନ୍ଧରେ ପ୍ରତ୍ୟକ୍ଷ ଧାରଣା ହୁଏ । ସେମାନେ ମନେ କରନ୍ତି, ଅତୀତ ଘଟନା ସେମାନଙ୍କ ଚକ୍ଷୁ ଆଗରେ ଘଟୁଛି ଏବଂ ଘଟନା ସେମାନେ ନିଜ ଚକ୍ଷୁରେ ଦେଖିଥିଲେ, ତାହା ଯେପରି ମନେ ରହିଥାନ୍ତା, ମୌଳିକ ଉପାଦାନ ବ୍ୟବହାର ଫଳରେ ବିଷୟ ସେମାନଙ୍କର ସେହିପରି ମନେ ରହେ । ପୁଣି ବିଚାର ଶକ୍ତି ପ୍ରୟୋଗଦ୍ୱାରା ସିଦ୍ଧାନ୍ତରେ ଉପନୀତ ହେଉଥିବା ଫଳରେ ବିଷୟର ପୁଙ୍ଖାନୁପୁଙ୍ଖ ଆଲୋଚନା ହୁଏ ଏବଂ ସେଥିରେ ବିଷୟକୁ ଭୁଲିଯିବାର ସମ୍ଭାବନା ରହେ ନାହିଁ ।

ଏଥିରେ ଶିକ୍ଷକଙ୍କୁ ଅଳ୍ପ ବର୍ଣ୍ଣନା କରିବାକୁ ପଡ଼େ, ଅଥଚ ଶିକ୍ଷାଦାନ ଅଧିକ ଦୃଢ଼ ଓ ଜୀବନ୍ତ ହୁଏ, ଜ୍ଞାନ ନିର୍ଦ୍ଦୋଷ ହୁଏ ଏବଂ ଧାରଣା ସ୍ପଷ୍ଟ ହୁଏ ।

ମୌଳିକ ଉପାଦାନ ବ୍ୟବହାର ସମ୍ବନ୍ଧରେ ଏହି ପୁସ୍ତକର ଦ୍ୱିତୀୟ ପରିଚ୍ଛେଦରେ "ସିରାଜ ଓ ଇଂରାଜମାନଙ୍କ ମଧ୍ୟରେ କଳି'' ପ୍ରସଙ୍ଗରେ ଆଓରଙ୍ଗଜେବଙ୍କ ଆଦେଶନାମାର ଗୋଟିଏ ବିବରଣ

ଦୃଷ୍ଟାନ୍ତ ରୂପେ ଦିଆ ଯାଇଅଛି । ସେହି ପରିଚ୍ଛେଦରେ ଏହି ପ୍ରସଙ୍ଗରେ ଆହୁରି ମଧ୍ୟ କେତେକ ଆଲୋଚନା କରା ଯାଇଅଛି । ଏଠାରେ ଆଉ ଗୋଟାଏ ଦୁଇଟା ପ୍ରତ୍ୟକ୍ଷ ଦୃଷ୍ଟାନ୍ତର ଅବତାରଣା କଲେ, ଯଥେଷ୍ଟ ହେବ ।

ଶିକ୍ଷକ ଅଶୋକଙ୍କ 'କଳିଙ୍ଗ ଯୁଦ୍ଧ' ସମ୍ବନ୍ଧରେ ଗୋଟିଏ ପାଠ ଦେବାକୁ ଯାଉଛନ୍ତି । ସେ ଯଦି କୌଣସି ଲାଇବ୍ରେରୀରୁ Hultzsch ଙ୍କ ପ୍ରଣୀତ "ଅଶୋକଙ୍କ ଶିଳାଲିପି" ପୁସ୍ତକ ଯୋଗାଡ଼ କରି ଛାତ୍ରମାନଙ୍କୁ ଅଶୋକଙ୍କ ଶିଳାଲିପି ସମ୍ବନ୍ଧରେ କିଛି ଧାରଣା ଦେଇପାରନ୍ତି, ତେବେ ପାଠଟି ଅତ୍ୟନ୍ତ ଚିତ୍ତାକର୍ଷକ ହେବ । ଆହୁରି ଭଲ ହେବ, ଯଦି ସେ କୌଣସି ଗୋଟିଏ ଶିଳାଲିପିର ସମାନ ଆକାର ଏକ ହାତ ନକଲ ଚିତ୍ର ( facsimile ) ଯୋଗାଡ଼ କରି ପାରନ୍ତି । ବ୍ରାହ୍ମୀ ଲିପି ପଢ଼ି ପାରିବା କଠିନ ନୁହେଁ । ଶିକ୍ଷକ ଅଳ୍ପ ଚେଷ୍ଟା କଲେ, ସେଥିରେ ସାମର୍ଥ୍ୟ ଅର୍ଜନ କରି ପାରିବେ । ସେ ଯଦି ଶିଳାଲିପିକୁ ଶ୍ରେଣୀରେ ପଢ଼ିଦେଇ, ପାଳିଭାଷା ଓ ସଂସ୍କୃତ ଭାଷା ମଧ୍ୟରେ ସାମଞ୍ଜସ୍ୟ ଦେଖାଇ ଦେଇ ଏବଂ ଶିଳାଲିପିର ଅର୍ଥ ସ୍ଥାନେ ସ୍ଥାନେ ଛାତ୍ରମାନଙ୍କୁ ବୁଝାଇ ଦେଇ ପାଠଟି ଆରମ୍ଭ କରନ୍ତି, ତାହା-ହେଲେ ପାଠ ପ୍ରତି ଛାତ୍ରମାନଙ୍କର ସ୍ୱାଭାବିକ ଆଗ୍ରହ ଜାତ ହେବ । ଛାତ୍ରମାନେ କଳ୍ପନା କରିବେ, ସେମାନେ ଅଶୋକଙ୍କ ନିଜ ମୁଖରୁ ତାଙ୍କ ଇତିହାସ ଶୁଣୁଛନ୍ତି ।

ଶିକ୍ଷକ ନିଜ ପାଠକୁ କେତେକ ବିଭାଗରେ ବିଭକ୍ତ କରି-ଛନ୍ତି । ପ୍ରଥମ ବିଭାଗରେ କଳିଙ୍ଗର ଶ୍ରୀ, ଜନସଂଖ୍ୟା, ଶୌର୍ଯ୍ୟବୀର୍ଯ୍ୟ କଥା ଶିକ୍ଷା ଦେଲେ । ଏଥିସକାଶେ ମଧ୍ୟ ମୌଳିକ ଉପାଦାନର

ଯୋଗାଡ଼ ହୋଇ ପାରିବ ଏବଂ କଳିଙ୍ଗ ଯୁଦ୍ଧର ଶିକ୍ଷାଦାନ ପାଇଁ ଯେଉଁ ପଦ୍ଧତି ଏକ୍ଷଣି କହାଗିଲା, ସେହି ପଦ୍ଧତିରେ କଳିଙ୍ଗର ବିଭବ ବିଷୟଟି ମଧ୍ୟ ଶିକ୍ଷା ଦିଆ ଯାଇପାରିବ । †

କଳିଙ୍ଗବାସୀଙ୍କର ପ୍ରତିରୋଧ, କଳିଙ୍ଗଯୁଦ୍ଧର ବିଭୀଷିକା ଓ ବିଜେତାଙ୍କର ଅନୁତାପ ପାଠର ଅନ୍ୟ ତିନି ବିଭାଗ ରୂପେ ଶିକ୍ଷକ ପାଠର ପରିକଳ୍ପନା କରିଛନ୍ତି । ପ୍ରଥମ ବିଭାଗରେ ମୌର୍ଯ୍ୟ ଓ କଳିଙ୍ଗ ସାମ୍ରାଜ୍ୟର ପରିସ୍ଥିତି ଓ ଆପେକ୍ଷିକ ସୀମା କଳାପଟାରେ ଆଙ୍କିଛନ୍ତି ।

ଦ୍ୱିତୀୟ ବିଭାଗ ଶିକ୍ଷା ଦେବାକୁ ଯାଇ ଶିକ୍ଷକ ଜଣାଇ-ଦେଲେ, ସେକାଳର ଇତିହାସ ଓ ପ୍ରତ୍ୟକ୍ଷ ବର୍ଣ୍ଣନା ଦୁର୍ଲ୍ଲଭ । କଳିଙ୍ଗବାସୀଙ୍କର ପ୍ରତିରୋଧ ସମ୍ବନ୍ଧରେ ଭାରତର ଜଣେ ବିଖ୍ୟାତ ଐତିହାସିକ ଯାହା କଳ୍ପନା କରିଛନ୍ତି, ଦେଖ । ସେ ଛାତ୍ରମାନଙ୍କ ହାତରେ ଅନୁଚ୍ଛେଦଟି ଇଂରାଜୀରେ କମ୍ବା ( ଓଡ଼ିଆରେ ) ଦେଇ ସେମାନଙ୍କୁ ନିଜେ ନିଜେ ବୁଝିବାକୁ କହିବେ ।

---

† 'କଳିଙ୍ଗର ବିଭବ' ଶିକ୍ଷାଦାନ ନିମନ୍ତେ ନିମ୍ନଲିଖିତ ପୁସ୍ତକରୁ ମୌଳିକ ଉପାଦାନ ସଂଗ୍ରହ କରନ୍ତୁ ।

1. R. D. Banerji—History of Orissa, Vol. I
2. S. P. Das—Glories of Ancient Orissa.
୩. ଶିବପ୍ରସାଦ ଦାଶ—(୧) ଅତୀତରେ ଓଡ଼ିଶା (୨) ଭାରତର ବିଭବ ।
୪. ହରେକୃଷ୍ଣ ମହତାବ—ଓଡ଼ିଶାର ଇତିହାସ ।

In that little strip of country extending along the eastern coast of Bay of Bengal many a great battle must have been fought from the banks of the Subarnarekha to that of the Krishna. A small but determined army must have opposed an invader at every river and there are so many of them all through, Asoka is silent about the engagements, because it was not his object to record the events of the reign. There are hundreds of impregnable forts along the foot of the Eastern Ghats, at least some of which must have been stormed before the entire country submitted to the Maurya King. Then comes the privations and horrors of a foreign invasion,the destruction of standing crops,the burning and plunder of the markets and bazars, the consequent famine and pestilence. The number of deaths from starvation, plague and diseases, must have been far greater than that of the captives and the killed. *

* A History of Orissa-Vol. I : R. D. Banerji.

ଛାତ୍ରମାନେ କିଛି ସମୟ ଅନୁଚ୍ଛେଦଟି ପଢ଼ି ସାରିବା ପରେ ବିଷୟ ପ୍ରତି ପ୍ରଶ୍ନଦ୍ୱାରା ଶିକ୍ଷକ ଛାତ୍ରମାନଙ୍କର ମନୋଯୋଗ ଓ ହୃଦ୍‌ବୋଧ ଜାଣ୍ଚ କରାଇବେ ।

୧। କଳିଙ୍ଗର ସୀମା କେତେ ଦୂର ଥିଲା ?

୨। କଳିଙ୍ଗ ଯୁଦ୍ଧ କେଉଁ କେଉଁ ସ୍ଥାନରେ, କେତେ ଥର ଲଢ଼ା ଯାଇଥିବ ?

ପ୍ରତ୍ୟେକ ନଦୀରେ ଯୁଦ୍ଧ ହୋଇଥିବାର ଅର୍ଥ କଣ ?

୩। କଳିଙ୍ଗର କେତୋଟି ଦୁର୍ଗ ଥିବ ? ଅନେକ ଦୁର୍ଗରେ ଯୁଦ୍ଧ ହୋଇଥିବାର କାରଣ କଣ ?

୪। ବିଜେତା ସେନା ଦେଶବାସୀଙ୍କ ଉପରେ କି କି ନିଷ୍ଠୁର ଚରିତ୍ରିକାର ଅଭିନୟ କରିଥିବେ ?

୫। ଯୁଦ୍ଧର ପରିଣାମ କଣ କଣ ହୋଇଥିବ ?

ଶିକ୍ଷକ ସଂକ୍ଷେପରେ କଳାପଠାର ସାରାଂଶ ଦେଇ, ତୃତୀୟ ବିଭାଗକୁ ଅଗ୍ରସର ହେବେ ଏବଂ ଜଣାଇଦେବେ, ଯୁଦ୍ଧର ବିଭୀଷିକା ନିଜେ ଅଶୋକ ତାଙ୍କ କାଳସି ଶୈଳ ଅନୁଶାସନରେ ବର୍ଣ୍ଣନା କରିଛନ୍ତି । ସେହି ଅନୁଶାସନ ଖୋଦ ପଢ଼ି ତୁମ୍ଭେମାନେ ବିଭୀଷିକା କଥା ବୁଝ । ଏହା କହି ଛାତ୍ରମାନଙ୍କ ହାତରେ ନିମ୍ନ ଅନୁଚ୍ଛେଦଟି ( ଇଂରାଜୀରେ ବା ଓଡ଼ିଆରେ ) ଦେବେ ।

When king Devanampriya Priyadarsin had been anointed eight years, Kalinga was conquered by him. One hundred and fifty thousand men were deported thence, one thou-

sand were slain there, and many times that number died. After that, now that Kalinga has been taken, Devanampriya is devoted to a zealous study of morality, to the love of morality, and to the instruction of people on morality. This is the repentance of Devanam--priya on account of his conquest of Kalinga. For, this is considered very painful and deplorable by Devanampriya, that, while one is conquering an unconquered country, slaughter, death and deportation of people are taking place there. But, the following is considered even more deplorable than this by Devanam-priya. To the Brahmanas or Sramanas, or other sects or householders, who are living there, then happen injury or slaughter or deportation of their beloved ones. × × × × desires towards all beings × × × self-control, impartiality and kindness. But, this × × × by Devanampriya, viz. the Conquest of Morality. And this conquest has been won repeatedly by Devanampriya both here and among all his borderers, even as far as six hundred Yojans, where King Antiyoga

[Antiochos, grandson of Seleukos Nikator, 261—246 B. C. ] is ruling, and beyond this Antiyoga where four kings are ruling, viz. Tulamaya (Ptolemy of Egypt, 285—247 B.C.), Antekina (Antigonos of Macedonia, 278—239 B.C.), Maka (Magas of Cyrene, death 258 B. C.), Alikyashudala [Alexander, probably King of Epirus, 272—258 B. C.), and likewise towards the south, where the Chodas and Pandyas are ruling, as far as Tamraparni. × × × everywhere people are conforming to Devanapriya's instruction in morality. Even those to whom the envoys of Devanampriya do not go having heard of the duties of morality, the ordinances and the instruction in morality of Devanampriya, are conforming to morality, and will conform to it. This conquest, which has been won by this everywhere, causes the feeling of satisfaction. *

× × × ×

---

* Kalsi Rock Edict of Asoka (Abridged)

*Note*:-1. Kalsi is a village in the Dehradun district of U. P.

2. Yojan is approximately equal to a league or about 3½ miles.

ପ୍ରଶ୍ନ:—(୧) ଅଶୋକ କେବେ କଳିଙ୍ଗ ଆକ୍ରମଣ କଲେ ?

(୨) ଯୁଦ୍ଧରେ କେତେ ଲୋକ ନିହତ ହେଲେ ?
କେତେ ବନ୍ଦୀ ହେଲେ ?
ଯୁଦ୍ଧ ଫଳରେ କେତେ ଲୋକ ନଷ୍ଟ ହେଲେ ?

(୩) ଯୁଦ୍ଧ ଫଳରେ ଅଶୋକଙ୍କ ମନରେ କାହିଁକି ଅନୁତାପ ଆସିଲ ?

(୪) ସେ ତହିଁ ସକାଶେ କି ନୂତନ ଜୀବନର ଗତି ଅବଲମ୍ବନ କଲେ ?

(୫) ଧର୍ମବିଜୟ (Conquest of Morality) କଣ ?

(୬) ଅଶୋକ କେଉଁ କେଉଁଠାରେ ଧର୍ମ ପ୍ରଚାର କଲେ ?

(୭) କଳିଙ୍ଗ ଯୁଦ୍ଧର କି ପରିଣାମ ହେଲ କହ ।

(୮) ସେହି ଯୁଦ୍ଧ ନ ହୋଇଥିଲେ, ଅଶୋକଙ୍କ ଜୀବନରେ କି ଗତି ହେବାର ସମ୍ଭାବନା ଥିଲ ?

(୯) ଅଶୋକଙ୍କ ଜୀବନର ଗତି କିଏ ବଦଳାଇଲ ? ପ୍ରକୃତ ବିଜେତା କିଏ ?— ଅଶୋକ, ନା କଳିଙ୍ଗ-ବାସୀ ? ଅଶୋକଙ୍କୁ ପୃଥିବୀର ଜଣେ ଶ୍ରେଷ୍ଠ ସମ୍ରାଟ୍ କହିବାର ମୂଳରେ କେଉଁ ଘଟଣା ଅଛି ?

ପୂର୍ବ ପର ସଂକ୍ଷିପ୍ତ କଳାପଟା ସାରାଂଶ ଦିଆଯିବ ।

ଅଶୋକଙ୍କ ଯୁଦ୍ଧସ୍ପୃହା, ଅନୁତାପ ଓ ପ୍ରଜା ତଥା ପ୍ରତିବେଶୀ ରାଜାମାନଙ୍କ ପ୍ରତି ସଦୟ ବ୍ୟବହାର ସମ୍ବନ୍ଧରେ ତାଙ୍କର ଏକ ପ୍ରତ୍ୟକ୍ଷ ମୁଖବାଣୀ କଥା ତୁମ୍ଭମାନଙ୍କର ଆଉ କଣ୍ଟି ଜାଣିବା ଉଚିତ । ଏହି ଯେଉଁ ଶୈଳଲିପି ଏହା ଓଡ଼ିଶାର ଗଞ୍ଜାମ ଜିଲ୍ଲାରେ

ଜଉଗଡ଼ଠାରେ ଅଛି । ଏହା କନ୍ଧ ଶିକ୍ଷକ ନିମ୍ନଲିଖିତ ଅନୁଚ୍ଛେଦଟି ଛାତ୍ରମାନଙ୍କ ହାତରେ ଦେବେ ଏବଂ ପୂର୍ବ ପ୍ରଣାଳୀରେ ପ୍ରଶ୍ନଦ୍ୱାରା ତହିଁର ବିଷୟ ଛାତ୍ରମାନଙ୍କୁ ଶିକ୍ଷା ଦେବେ ।

× × × All men are my children. As on behalf of my own children I desire that they may be provided by me with complete welfare and happiness in this world and in the other world, even so is my desire on behalf of all men. It might occur to my unconquered borderers to ask, "What does the king desire with reference to us ?" This alone is my wish with reference to the borderers............that they may not be afraid of me, but may have confidence in me, that they may obtain only happiness from me, not misery,.......... that they may be induced by me to practise morality. *

× × × ×

ମୌଳିକ ଉପାଦାନ ମଧ୍ୟରେ ସମସାମୟିକ ଲେଖକ, ପର୍ଯ୍ୟଟକ, ସରକାର, ରଜା ଆଦିଙ୍କର ଲିଖିତ ବିବରଣ, ଖୋଦିତ-

---

* Jaugarh Rock Edict of Asoka.

*Note*:- Jaugarh is a village in the Ganjam District of Orissa.

ଲିପି ପ୍ରଭୃତି ଅନ୍ତର୍ଗତ । ମୁଦ୍ରା, ଛବି, ଶିଳ୍ପସ୍ଥାପତ୍ୟ, ପ୍ରାସାଦ, ଦୁର୍ଗ, ଦେବାଳୟ, ଗୁମ୍ଫା ପ୍ରଭୃତି ମଧ୍ୟ ତନ୍ମଧ୍ୟରେ ଅନ୍ତର୍ଗତ । ଅଜନ୍ତାଗୁମ୍ଫାର ମୂର୍ତ୍ତିଚୟ, କୋଣାର୍କ, ଭୁବନେଶ୍ୱର, ତାଜମହଲ ପ୍ରଭୃତି ପ୍ରତ୍ୟକ୍ଷ ଦର୍ଶନ କରି ଶିକ୍ଷକଙ୍କ ସାହାଯ୍ୟରେ ଛାତ୍ରମାନେ ତହିଁରୁ ଯେଉଁ ପ୍ରତ୍ୟକ୍ଷ ଜ୍ଞାନ ଅର୍ଜନ କରିବେ, ଶିକ୍ଷକଙ୍କ ବା ପୁସ୍ତକର ବର୍ଣ୍ଣନାଦ୍ୱାରା ସେପରି ଜ୍ଞାନ ଜାତ ହୋଇ ପାରିବ ନାହିଁ । ଏପ୍ରକାର ପ୍ରତ୍ୟକ୍ଷ ଜ୍ଞାନ ଅର୍ଜନ ନିମନ୍ତେ ଛାତ୍ରମାନଙ୍କର ଐତିହାସିକ ପର୍ଯ୍ୟଟନର ସୁବିଧା କରି ଦିଆଯିବା ଉଚିତ । ଲିଖିତ ବିବରଣ ସକାଶେ ସ୍କୁଲ୍ ଲାଇବ୍ରେରିରେ ଯଥେଷ୍ଟ ପୁସ୍ତକ ରହିବା ଦରକାର । ଐତିହାସିକ ପର୍ଯ୍ୟଟନ ବ୍ୟୟ-ସାପେକ୍ଷ ଏବଂ ସର୍ବଦା ଓ ସର୍ବତ୍ର ତାହାର ସୁଯୋଗ ମିଳିବା ସହଜ ନୁହେଁ । ସେଥିସକାଶେ ସ୍କୁଲ ଲାଇବ୍ରେରିରେ ବହୁସଂଖ୍ୟାରେ ମୌଳିକ ବସ୍ତୁର ଛବିମାନ ରହିବା ଉଚିତ ।

ପ୍ରତ୍ୟକ୍ଷ ବସ୍ତୁ ବା ଛବି ଛାତ୍ରମାନଙ୍କୁ ଦେଖିବାକୁ ଦେଇ ଶିକ୍ଷକ ତାହାର ବୈଶିଷ୍ଟ୍ୟ ଓ ଐତିହାସିକ ତତ୍ତ୍ୱ ସମ୍ବନ୍ଧରେ ପ୍ରଶ୍ନୋତ୍ତର ଓ କଥୋପକଥନ ଆକାରରେ ଅନେକ କଥା ଶିକ୍ଷା ଦେଇ-ପାରିବେ । ପରୋକ୍ଷ ବର୍ଣ୍ଣନା ବା ପଠନଦ୍ୱାରା ସେକାର୍ଯ୍ୟ ସାଧିତ ହେବା ସମ୍ଭବ ନୁହେଁ ।

**କବିତା ଓ ଇତିହାସ :**—କବିତା ହୃଦୟକୁ ଆଲୋଡ଼ିତ କରେ । ତେଣୁ ଐତିହାସିକ କବିତାର ସ୍ଥାନ ଇତିହାସ ଶିକ୍ଷାରେ ଅତି ଉଚ୍ଚ । ସେଥିରେ ଛାତ୍ରର ମନସନ୍ତର୍ପଣ ହୁଏ ଏବଂ ପଠିତ ଐତିହାସିକ ଘଟଣାର ପୁନରାବୃତ୍ତି ହୋଇ ସ୍ମୃତି ପଟରେ ଦୃଢ଼ମୂଳ ହୁଏ । ଅନେକ କବିତାରେ ଲେଖକ ଐତିହାସିକ ଘଟଣାର ସତ୍ୟତା

ପ୍ରତି ଲକ୍ଷ୍ୟ ନ ରଖି କଳ୍ପନାର ପୂର୍ଣ୍ଣ ସାହାଯ୍ୟ ନେଇଥାନ୍ତି । ସେପରି କବିତା ଛାତ୍ରଙ୍କ ମନରେ ଭ୍ରମ ଧାରଣା ଜନ୍ମାଏ । ଶିକ୍ଷକ ଏପରି କବିତା ବର୍ଜନ କରିବେ ଏବଂ ସତ୍ୟମୂଳକ ଘଟନା ବର୍ଣ୍ଣନା କରୁଥିବା ସୁନ୍ଦର ସୁନ୍ଦର କବିତାର ଆବୃତ୍ତିରେ ଐତିହାସିକ ଶିକ୍ଷାକୁ ଜୀବନ୍ତ ଓ ଚିତ୍ତାକର୍ଷକ କରିବେ ।

ଭାରତର ଯେ କୌଣସି ଭାଷାରେ ଐତିହାସିକ କବିତାର ସଂଖ୍ୟା ବିରଳ ନୁହେ । ଏପରି କି ବେଦରେ ଆର୍ଯ୍ୟମାନଙ୍କର ସମାଜ ଓ ଧର୍ମ ସମ୍ବନ୍ଧରେ ବହୁଳ ବର୍ଣ୍ଣନା ରହିଅଛି । ବୈଦିକ ସମାଜ, ଧର୍ମ ଓ ସଭ୍ୟତା ଶିକ୍ଷା ଦେବା ବେଳେ ସେଗୁଡ଼ିକର ସାହାଯ୍ୟ ନେଇପାରିଲେ, ଦୂର ଅତୀତର ଜ୍ଞାନ ସରସ ଓ ପ୍ରତ୍ୟକ୍ଷ ହୁଏ ।

କେତେକ କବି ସମସାମୟିକ ଘଟନା ବର୍ଣ୍ଣନା କରିଥାନ୍ତି । ତାହା ଇତିହାସ ଶିକ୍ଷାରେ ବିଶେଷ ହିତକର ହୁଏ ଏବଂ ସମସାମୟିକ ଲୋକଙ୍କର ଘଟନା ସମ୍ବନ୍ଧରେ ଚିନ୍ତା ଓ ଭାବନା ଛାତ୍ରର ହୃଦୟରେ ଜାଗରୂକ କରେ । ବାଣଭଟ୍ଟଙ୍କ ହର୍ଷଚରିତ ଓ ଚାନ୍ଦବର୍ଦ୍ଦାଇଙ୍କର ପୃଥ୍ୱୀରାଜରାସୋ ଏପ୍ରକାର କବିତା ମଧ୍ୟରେ ଉଲ୍ଲେଖଯୋଗ୍ୟ । ତତ୍କାଳୀନ ଲୋକଙ୍କର ଧାରଣା ଓ ଐତିହାସିକ ସତ୍ୟର ତୁଳନାରେ ସେଗୁଡ଼ିକ ସାହାଯ୍ୟ କରେ ।



— ନଅ —

# ଶିକ୍ଷାଦାନ ଉପକରଣର ବ୍ୟବହାର

ମାନଚିତ୍ର—ଇତିହାସ ଶିକ୍ଷାଦାନରେ ଭୌଗୋଳିକ ଜ୍ଞାନ ନିତାନ୍ତ ଆବଶ୍ୟକ । ଭାରତର ଇତିହାସ ଶିକ୍ଷା ଦେବାକୁ ହେଲେ, ଭାରତର ଭୂଗୋଳ ଉପରେ ଭିତ୍ତି କରିବାକୁ ହୁଏ । ଆର୍ଯ୍ୟମାନେ କେଉଁଠାରୁ କେଉଁବାଟେ ଭାରତକୁ ଆସିଲେ ଏବଂ କାହିଁକି ପ୍ରଥମେ ଉପନିବେଶ ସ୍ଥାପନ କରି କ୍ରମେ ପୂର୍ବକୁ ଓ ପରେ ଦକ୍ଷିଣକୁ ଅଗ୍ରସର ହେଲେ, ତାହା ଠିକ୍ ଠିକ୍ ରୂପେ ଜାଣିବା ନିମନ୍ତେ ଛାତ୍ରମାନଙ୍କୁ ଉତ୍ତରମେରୁ ଅଞ୍ଚଳ, ୟୁରୋପ ଓ ମଧ୍ୟ ଏସିଆର ସାଧାରଣ ଭୌଗୋଳିକ ଅବସ୍ଥାନ ତଥା ଭାରତର ବିସ୍ତୃତ ଭୌଗୋଳିକ ପରିସ୍ଥିତି ବିଶଦ ରୂପେ ଜାଣିବାକୁ ହେବ । ଐତିହାସିକ ପାଠରେ ଭୂଗୋଳର ସାହାଯ୍ୟ ବିନା ବିଷୟଜ୍ଞାନ ଛାତ୍ରମାନଙ୍କର ସମ୍ୟକ୍ ହୃଦ୍-ବୋଧ ହେବ ନାହିଁ ।

ଭୌଗୋଳିକ ମାନଚିତ୍ର, ପାଠ୍ୟପୁସ୍ତକରେ ଥିବା ମାନଚିତ୍ର କିଂବା ସାଧାରଣ ଏଟ୍‌ଲସରେ ଅନେକଗୁଡ଼ିଏ ଅନାବଶ୍ୟକ କଥା ଥାଏ । ସେଗୁଡ଼ିକର ବ୍ୟବହାରରେ ଛାତ୍ର କେତେକ ଅସୁବିଧା ବୋଧ କରେ । ଐତିହାସିକ ମାନଚିତ୍ର ଏପରି ହେବା ଉଚିତ, ଯେପରି ଇତିହାସ ଶିକ୍ଷାଦାନ ପାଇଁ ଆବଶ୍ୟକ ଅଳ୍ପ କଥା କେବଳ

ଅଙ୍କିତ ଥିବ । ଗୋଟିଏ ପାଠ, ଗୋଟିଏ ରାଜତ୍ୱ ବା ଗୋଟିଏ ଯୁଗର ଇତିହାସ ଶିକ୍ଷା ଦେବା ପାଇଁ ଗୋଟିଏ ଗୋଟିଏ ଐତିହାସିକ ମାନଚିତ୍ର ପ୍ରସ୍ତୁତ ହେବା ବାଞ୍ଛନୀୟ । ଏଥିନିମନ୍ତେ ଗୋଟିଏ ଗୋଟିଏ ସୀମା ମାନଚିତ୍ର ରହିଲେ, ଛାତ୍ରମାନେ ନିଜ ହାତରେ ପ୍ରତିଦିନର ପାଠରେ ଆବଶ୍ୟକ ଭୌଗୋଳିକ ସ୍ଥାନମାନ ସେଥିରେ ଦେଖାଇ ପାରିବେ । ମୁଦ୍ରିତ ଐତିହାସିକ ଏଟଲସମାନ ଏହି ସମ୍ପର୍କରେ ଛାତ୍ରମାନଙ୍କ ପକ୍ଷରେ ବିଶେଷ ଉପାଦେୟ ହୁଏ, କାରଣ ସେଥିରେ ଅନେକଗୁଡ଼ିଏ ମାନଚିତ୍ର ଥାଏ ଏବଂ ପ୍ରତ୍ୟେକରେ କେବଳ ଇତିହାସ ସମ୍ପୃକ୍ତ ସ୍ଥାନମାନ ଚିହ୍ନିତ ହୋଇଥାଏ । ଏହି ପ୍ରକାର ଏଟଲସ ସାହାଯ୍ୟରେ ପ୍ରତ୍ୟେକ ପାଠ ପାଇଁ ଛାତ୍ରମାନେ ନିଜ ନିଜ ମାନଚିତ୍ର ଅଙ୍କନ କରିବାକୁ ସହଜ ବୋଧ କରନ୍ତି ।

ଶିକ୍ଷକ ନିଜେ ଏପରି ପ୍ରବୀଣ ହେବେ ଯେ କଳାପଟାରେ ସୀମାମାନଚିତ୍ର ଚଞ୍ଚଳ ଅଙ୍କନ କରି ପାରୁଥିବେ ଏବଂ ସେଥିରେ ଐତିହାସିକ ସ୍ଥାନମାନ ଯଥାଯଥ ଚିହ୍ନଟ କରି ପାରୁଥିବେ । କଳାପଟା ମାନଚିତ୍ରରେ ଛାତ୍ରମାନଙ୍କୁ ଜଣା ଥିବା କେତେକ ସ୍ଥାନର ନାମ ବା ଚତୁଃସୀମା ଆଗରୁ ଲେଖି ଜଣାଇ ଦେଲେ ସେମାନେ ମାନଚିତ୍ରର ଅବସ୍ଥିତି, ଦୂରତା ପ୍ରଭୃତି ଅନାୟାସରେ ଧାରଣା କରିପାରନ୍ତି । ଛାତ୍ରମାନେ ମଧ୍ୟ ଏପରି ସୀମା ମାନଚିତ୍ରମାନ ଅଙ୍କନ କରିପାରିବାକୁ ଅଭ୍ୟାସ କରିବେ । ସେମାନଙ୍କ ଅଙ୍କିତ ମାନଚିତ୍ରରେ ସୌନ୍ଦର୍ଯ୍ୟ ଅପେକ୍ଷା ଅବସ୍ଥିତିର ଠିକଣା ପ୍ରତି ଅଧିକ ଦୃଷ୍ଟି ଦେବା ଉଚିତ ।

**ଛବି ଓ ଚିତ୍ର**—ଛବି ଓ ଚିତ୍ର ଜ୍ଞାନକୁ ପ୍ରତ୍ୟକ୍ଷ କରେ । ଅତୀତ ଘଟଣା ପରୋକ୍ଷ ବସ୍ତୁ । ତାହା କେବଳ ଶୁଣିବା ବା ପଢ଼ିବା

ଦ୍ୱାରା ସ୍ମୃତିରେ ଅଙ୍କିତ ହୋଇ ପାରେ ନା, କିନ୍ତୁ ଛବି ବା ଚିତ୍ରରେ ଦେଖିଲେ ତାହା ବର୍ତ୍ତମାନର ପ୍ରତ୍ୟକ୍ଷ ଦେଖିବା ଘଟନା ପରି ଛାତ୍ରର ମନେ ରହେ । ଏଥି ସକାଶେ ଚିତ୍ର, ଫଟୋଗ୍ରାଫ, ଛବି, ଚଳଚ୍ଚିତ୍ର ପ୍ରଭୃତିର ସାହାଯ୍ୟରେ ଇତିହାସ ଶିକ୍ଷା ଦେଲେ, ପାଠ ଜୀବନ୍ତ ଓ ଚିତ୍ତାକର୍ଷକ ହୁଏ ଏବଂ ଜ୍ଞାନ ଚିରସ୍ଥାୟୀ ହୁଏ ।

ଭାରତରେ ଏପ୍ରକାର ଚିତ୍ର ସଂଖ୍ୟା ବିରଳ ହେଲେହେଁ ଯାହା ଅଛି, ତାହାର ସଦ୍‌ବ୍ୟବହାର ହେବା ଉଚିତ; ଅଜନ୍ତା, ସାଞ୍ଚି, ତାଜମହଲ, ଦେୱାନଖାସ, ଦେୱାନଆମ ପ୍ରଭୃତିର ଶିକ୍ଷା ଚଳଚ୍ଚିତ୍ର ସାହାଯ୍ୟରେ ଦିଆଯିବା ଉଚିତ ।

ଶିକ୍ଷକ କେତେକ ପ୍ରବୀଣ ଚିତ୍ରକର ଓ ଛାତ୍ରଙ୍କ ସାହାଯ୍ୟରେ ଅପେକ୍ଷାକୃତ ବୃହତ୍ତର ଆକାରରେ ଏପ୍ରକାର କେତେକ ଚିତ୍ର ପ୍ରସ୍ତୁତ କରିପାରିଲେ, ଶ୍ରେଣୀର ବିଶେଷ ଉପଯୋଗରେ ଆସିବ । ବେଳେବେଳେ ପତ୍ରପତ୍ରିକାମାନଙ୍କରେ ଭଲ ଭଲ ଐତିହାସିକ ଚିତ୍ର ମୁଦ୍ରିତ ଆକାରରେ ବାହାରେ । ସେଗୁଡ଼ିକ ଶିକ୍ଷକ ସଂଗ୍ରହ କରି ରଖିବେ ।

ପ୍ରତ୍ୟେକ ସ୍କୁଲରେ ଗୋଟିଏ ଗୋଟିଏ ସିନେମା ଯନ୍ତ୍ର ଓ ସ୍ଲାଇଡମାନ ରହିଲେ, ଶିକ୍ଷାଦାନରେ ବିଶେଷ ସାହାଯ୍ୟ ହୁଅନ୍ତା । ସୁବିଧା ଆକାରର ଏପ୍ରକାର ସାନ ସାନ ଯନ୍ତ୍ର ଏବେ କିଣା ଯାଇ-ପାରିବ ଏବଂ ଦିନବେଳେ ମଧ୍ୟ ଶ୍ରେଣୀକୋଠରୀରେ ବ୍ୟବହାର କରାଯାଇ ପାରିବ ।

ଛବି, ଚିତ୍ର, ଚଳଚ୍ଚିତ୍ର ପ୍ରଭୃତି କେବଳ ଶ୍ରେଣୀରେ ଦେଖାଇ ଦେଲେ ଶିକ୍ଷକଙ୍କ କାର୍ଯ୍ୟ ଶେଷ ହୁଏ ନାହିଁ । ସେଥିରେ ଥିବା

ଐତିହାସିକ ପ୍ରତ୍ୟେକ ବିଶେଷତ୍ୱ ସମ୍ବନ୍ଧରେ ଛାତ୍ରମାନଙ୍କୁ ପୂର୍ଣ୍ଣ ଜ୍ଞାନ ଦେବାକୁ ହେବ। ତାହାର ସମ୍ବନ୍ଧରେ ଛାତ୍ରମାନଙ୍କୁ ବହୁସଂଖ୍ୟକ ଉପଯୋଗୀ ପ୍ରଶ୍ନ ପଚାରିବାକୁ ହେବ, ନିଜେ କଠିନ ବିଷୟର ବ୍ୟାଖ୍ୟା କରିବାକୁ ହେବ ଏବଂ ଶେଷରେ ପ୍ରଦତ୍ତ ଜ୍ଞାନକୁ ଧାରା-ବାହିକ ବିବରଣ ଆକାରରେ ସଜାଇବାକୁ ହେବ ।

ଗୁଡ଼ାଏ ଛବି ନେଇ ଏକ ସଙ୍ଗେ ଶ୍ରେଣୀରେ ଦେଖାଇବାକୁ ହେବ ନାହିଁ । ଅନାବଶ୍ୟକ ଛବି ମଧ୍ୟ ଦେଖାଇବାକୁ ହେବ ନାହିଁ । ଛବି, ଚିତ୍ର ପ୍ରଭୃତି ଦେଖିବା ଛାତ୍ରର ଗୋଟିଏ ଶ୍ରେଣୀ-କୋଠରିର କେଲସ ବା ମଜଲିସରେ ଯେପରି ପରିଣତ ନ ହୁଏ, ସେଥିପ୍ରତି ଶିକ୍ଷକ ସତର୍କ ରହିବେ; କାରଣ, ସାଧାରଣ ମୌଖିକ ଶିକ୍ଷାଦାନ ପାଠ ପ୍ରତି ଛାତ୍ର ବୀତସ୍ପୃହ ହେବାର ଏଥିରେ ଯଥେଷ୍ଟ ସମ୍ଭାବନା ରହିଅଛି ।

**ମୁଦ୍ରା**—ଛବି ଓ ଚିତ୍ର ପରି ଶ୍ରେଣୀକୋଠରିରେ ପ୍ରାଚୀନ ମୁଦ୍ରାର ବ୍ୟବହାରର ମଧ୍ୟ ଆବଶ୍ୟକତା ରହିଅଛି । ମୁଦ୍ରାରୁ ମଧ୍ୟ ଛବି ଓ ଚିତ୍ର ପରି ଜ୍ଞାନ ଦେବା ଆବଶ୍ୟକ । ମୁଦ୍ରା ପ୍ରାଚୀନ ଚିତ୍ରର ଗୋଟିଏ ପ୍ରତିରୂପ ମାତ୍ର ।

କନିଷ୍କଙ୍କ ରାଜତ୍ୱର ପୂର୍ବବର୍ତ୍ତୀ ମୁଦ୍ରା ଦୁର୍ଲଭ ଅଟେ । କନିଷ୍କ, ହର୍ଷବର୍ଦ୍ଧନ, ଓ ରାଜପୁତ ଯୁଗର ରାଜାମାନଙ୍କ ମୁଦ୍ରା କେତେକ ମିଳିଅଛି । ପରବର୍ତ୍ତୀ କାଳୀନ ଶାସକମାନଙ୍କର ମୁଦ୍ରା ସୁଲଭ ହୋଇଅଛି । ଶିକ୍ଷକ ପ୍ରତ୍ୟେକ ମୁଦ୍ରା ସଂଗ୍ରହ କରିପାରନ୍ତି, କିନ୍ତୁ ଏକାର୍ଯ୍ୟ ତାଙ୍କ ପକ୍ଷରେ କଷ୍ଟ ଓ ବ୍ୟୟସାଧ୍ୟ । ପ୍ରତି ବିଦ୍ୟାଳୟରେ ଏକ ମୁଦ୍ରା ସଂଗ୍ରହାଗାର ରହିବା ବାଞ୍ଛନୀୟ । ଅଭାବ ଓ ଅସୁବିଧା

ସ୍ଥଳେ ମୁଦ୍ରା ଛବି ସମ୍ବଳିତ ମୁଦ୍ରିତ ପୁସ୍ତକମାନ ଆଜିକାଲି ମିଳୁଛି । ଅନ୍ତତଃ ଏହି ପୁସ୍ତକମାନ ପ୍ରତି ବିଦ୍ୟାଳୟର ପୁସ୍ତକାଗାରରେ ରହିଲେ, ଶିକ୍ଷକଙ୍କ ଇତିହାସ ଶିକ୍ଷାଦାନରେ ପ୍ରକୃତ ଓ ଯଥେଷ୍ଟ ସାହାଯ୍ୟ ମିଳିବ । ଶିକ୍ଷକ ଏହି ପୁସ୍ତକର ଏକାଧିକ ମୁଦ୍ରାର ଛବି ଅପେକ୍ଷାକୃତ ବୃହତ୍ତର ଆକାରରେ ଆର୍ଟ କାଗଜରେ ନିଜେ ବା ଅନ୍ୟର ସାହାଯ୍ୟରେ ଅଙ୍କନ ମଧ୍ୟ କରିଇ ପାରିବେ । ଶ୍ରେଣୀବାର ଏକା ସଙ୍ଗେ ଦେଖାଇ ମୁଦ୍ରା ଓ ଶାସକଙ୍କ ସମ୍ବନ୍ଧରେ ପ୍ରତ୍ୟକ୍ଷ ଆଲୋଚନା ଓ ସମାଲୋଚନା କରିବାରେ ଏହି ପଦ୍ଧତି ଅତି ସଙ୍ଗତ ଓ ସାହାଯ୍ୟକାରୀ ହୋଇ ପାରିବ । ପ୍ରାଚୀନ ହର୍ମ୍ୟ, ଦୁର୍ଗ, ଦେବାଳୟ, ଭଗ୍ନାବଶେଷ, ମନୁଷ୍ୟର ଚିତ୍ର ପ୍ରଭୃତିର ମଧ୍ୟ ଏପ୍ରକାର ମୁଦ୍ରିତ ବା ହସ୍ତାଙ୍କିତ ଛବି ଏହି ପ୍ରକାରେ ବ୍ୟବହାର କରାଯାଇ ପାରିବ ।

**କଳାପଟାର କାର୍ଯ୍ୟ**—ଶିକ୍ଷକ ମୌଖିକ ପାଠ ଦେବା ବେଳେ ତାଙ୍କ ପାଠର ଯୋଜନା, କ୍ରମ, ବିଷୟସୂଚୀ, ପ୍ରଧାନ ପ୍ରଧାନ ନାମ, ଘଟନା ଓ ଘଟନାକାଳ, ମାନଚିତ୍ର, ବିଭିନ୍ନ ବସ୍ତୁର ଚିତ୍ର (ଯଥା, ପୋଷାକ, ଯୁଦ୍ଧାସ୍ତ୍ର, ଯୁଦ୍ଧକ୍ଷେତ୍ରର ନକ୍ସା, ଦୁର୍ଗ, ଶିଳ୍ପକାରୁକାର୍ଯ୍ୟର ଛବି ପ୍ରଭୃତି) ଯଥାଯଥ ମୁହୂର୍ତ୍ତରେ କ୍ରମେ କଳାପଟାରେ ଅଙ୍କିତ କରୁଥିବେ । ଏଗୁଡ଼ିକ ପାଠ ଶେଷ ହେବା ପର୍ଯ୍ୟନ୍ତ କଳାପଟାରେ ରହିଥିବ । ଅନ୍ୟ ଯାହା କିଛି ଅଳ୍ପ ଆବଶ୍ୟକ ବିଷୟ ସେ କଳାପଟାରେ ଲେଖିବେ, ତାହା ମଝିରେ ମଝିରେ ଲିଭାଇ ଦେଉଥିବେ । ପାଠ ଶେଷରେ ପାଠର ସାରାଂଶ ମଧ୍ୟ କଳାପଟାରେ ଲେଖାଯିବ । ଏପ୍ରକାର ଗୃହୀତ ଛବି ନ ହେଲେ, ପାଠ ବା ଶିକ୍ଷାଦାନ ସୁବୋଧ

ଓ ଚିତ୍ରକର୍ଷକ ହୁଏ ନାହିଁ । ଏଥି ସକାଶେ ଶ୍ରେଣୀରେ ୧୬ଫୁଟ × ୪ଫୁଟ ଆକାରର ଗୋଟିଏ କାନ୍ଥ ସିମେଣ୍ଟ କଳାପଟା ରହିବା ଉଚିତ । ମୌଖିକ ପାଠର କଳାପଟା ଗୋଟିଏ ପ୍ରଧାନ ଆବଶ୍ୟକ ଉପକରଣ । ଏହା ପାଠର ଶ୍ରୁତ ବା ପରୋକ୍ଷ ବର୍ଣ୍ଣନାକୁ ସୁସ୍ପଷ୍ଟ ଓ ପ୍ରତ୍ୟକ୍ଷ କରେ । ଶିକ୍ଷକ କଳାପଟା ବ୍ୟବହାରରେ ଅବହେଳା କରି ନିଜ ମୌଖିକ ପାଠକୁ ନିଷ୍ଫଳ କରିଥାନ୍ତି । ପାଠକୁ ସଫଳ କରିବାକୁ ହେଲେ, କଳାପଟା ବା ଚକ୍ଷୁ ସାହାଯ୍ୟରେ ଶିକ୍ଷକଙ୍କ ବର୍ଣ୍ଣନାକୁ ଦୃଶ୍ୟଚିତ୍ରରେ ପରିଣତ କରିବାକୁ ହେବ ।

**ସମୟ୍‌ରେଖା**—ସମୟ୍‌ରେଖା ବିନା ଛାତ୍ରମାନେ ସମୟର ଦୂରତା କଳ୍ପନା କରି ପାରନ୍ତି ନାହିଁ । ଶିକ୍ଷକ ଦୁଇପ୍ରକାର ସମୟ୍‌-ରେଖା ଛାତ୍ରମାନଙ୍କୁ ଦେଖାଇବେ । ଆବହମାନ କାଳରୁ ବର୍ତ୍ତମାନ ପର୍ଯ୍ୟନ୍ତ ସମଗ୍ର କାଳ ଖଣ୍ଡିଏ ଲମ୍ବା କାଗଜରେ ସମୟର ଆନୁପାତିକ ବ୍ୟବଧାନର ମାପରେ ଅଙ୍କିତ ରହିବ । ଏହା ଆବଶ୍ୟକ ମତେ ଶ୍ରେଣୀକୁ ଅଣାଯାଇ ବ୍ୟବହାର କରାଯିବ । ଶିକ୍ଷକ କଳାପଟାରେ ପାଠର ଆବଶ୍ୟକ ମତେ ସମୟ୍‌ରେଖା ହାତରେ ଆଙ୍କି ଅଳ୍ପ କେତେକ ବର୍ଷର ଘଟନାମାନ ସେଥିରେ ଦେଖାଇବେ । ଏହି ଦୁଇ ପ୍ରକାର ସମୟ୍‌ରେଖାରୁ କୌଣସିଥିରେ ଅନେକଗୁଡ଼ିଏ ଘଟନା ଏକା ସଙ୍ଗରେ ଚିହ୍ନିତ କରାଯିବ ନାହିଁ । ସମୟ୍‌ରେଖାଗୁଡ଼ିକୁ ରଙ୍ଗ ଦେଇ ବା ରଙ୍ଗିନ ଚକ୍‌ଦ୍ୱାରା ସୁନ୍ଦର କରାଯାଇ ପାରେ ।

**ସଂଗ୍ରହାଗାର**—ବିଦ୍ୟାଳୟରେ ଏକ ସଂଗ୍ରହାଗାର ରଖିବା ନିମନ୍ତେ ଇତିହାସଶିକ୍ଷକ ପ୍ରଯତ୍ନ କରିବେ । ଏଥିରେ କାରୁ-କାର୍ଯ୍ୟ, ପୋଷାକ, ପ୍ରାଚୀନ ଅସ୍ତ୍ରଶସ୍ତ୍ର, ମୁଦ୍ରା, ସମୟ୍‌ରେଖା,

ଐତିହାସିକ ମାନଚିତ୍ର, ଛବି ପ୍ରଭୃତି ସଂରକ୍ଷିତ ହେବ । ଏସବୁର ସାହାଯ୍ୟ ନେଲେ, ଇତିହାସପାଠ ସରସ ହୁଏ ।

**ଲାଇବ୍ରେରି**—ପ୍ରତ୍ୟେକ ଶ୍ରେଣୀରେ ଗୋଟିଏ ଲେଖାଏଁ କିଂବା ପ୍ରତି ବିଦ୍ୟାଳୟ ପାଇଁ ଗୋଟିଏ ଲେଖାଏଁ ଇତିହାସ ଓ ଐତିହାସିକ ସାହିତ୍ୟର ଲାଇବ୍ରେରି ଥିଲେ, ଶିକ୍ଷକ ତଥା ଛାତ୍ରମାନେ ସେଥିରେ ଯଥେଷ୍ଟ ଉପକୃତ ହୋଇପାରିବେ ଏବଂ ଇତିହାସ ପାଇଁ ଛାତ୍ରମାନଙ୍କର ଶ୍ରଦ୍ଧା ଜାତ ହୋଇପାରିବ ।

**ଇତିହାସ ସମିତି** :—ପ୍ରତି ସ୍କୁଲରେ ଗୋଟିଏ ଇତିହାସ ସମିତି ଗଠିତ ହେବ । ସମିତିର ଭାରରେ ଛାତ୍ରମାନେ ପ୍ରଧାନ ଐତିହାସିକ ସ୍ଥାନ ପର୍ଯ୍ୟଟନ କରିବେ । ବେଳେବେଳେ ଐତିହାସିକ ନାଟକ ବା ନାଟିକା ଅଭିନୟ କରିବେ । ପ୍ରଧାନ ପ୍ରଧାନ ବିଷୟରେ ବିଦ୍ୟାଳୟରେ ଆଲୋଚନା ଓ ସମାଲୋଚନା ବା ଯୁକ୍ତିତର୍କ ହେବ ;

ସମିତିର ବୟସ୍କ ଛାତ୍ରମାନେ ଐତିହାସିକ ପ୍ରବନ୍ଧ, କବିତା, ନାଟିକା ପ୍ରଭୃତି ପ୍ରଣୟନ କରି ସମିତିକୁ ଶୁଣାଇବେ । ତାହାର ଆଲୋଚନା ସମାଲୋଚନା ସମିତିର ସମସ୍ତଙ୍କର କାର୍ଯ୍ୟ ହେବ ।

ସମିତି ସମବେତ ଚେଷ୍ଟାରେ ଐତିହାସିକ ଚିତ୍ରାଙ୍କନ, କାଠ ଓ କାଦୁଅର ଉପାଦାନ ନିର୍ମାଣ, ପ୍ରାଚୀନ ପୋଷାକ ସିଲେଇ ପ୍ରଭୃତି କାର୍ଯ୍ୟ ହାତରେ ନେଇପାରିବ । ଉଦାହରଣ ସ୍ୱରୂପ ଉଲ୍ଲେଖ କରାଯାଇ ପାରେ ଯେ କେତେକ ଛାତ୍ର କାଠ ବା କାଦୁଅରେ କୃତ୍ରିମ ଅଶୋକସ୍ତମ୍ଭ ଓ କେତେକ କୃତ୍ରିମ ଅଶୋକ ଶିଳାଲିପି ପ୍ରସ୍ତୁତ

କଲେ, କେତେକେ ତଦାନୀନ୍ତନ ବୌଦ୍ଧ ସନ୍ନ୍ୟାସୀମାନଙ୍କର ଗେରୁଆ ପୋଷାକ ସିଲାଇ କଲେ, କେତେକେ "ପ୍ରେମର ଜୟ ହଁ ଜୟ" ଲେଖାଥିବା କେତେକ ପତାକା ପ୍ରସ୍ତୁତ କଲେ, କେତେକେ କାଗଜରେ ତାତ୍କାଳୀନ ବିହାରର ଚିତ୍ର ଅଙ୍କନ କଲେ, କେତେକେ ମହେନ୍ଦ୍ର, ସଂଘମିତ୍ରାଙ୍କୁ ନେଇଥିବା ଅଶ୍ୱତ୍ଥ ଗଛର ପ୍ରତିକୃତି ପାଳ, କନା, କାଗଜ ପ୍ରଭୃତିରେ ନିର୍ମାଣ କଲେ ଏବଂ ଅନ୍ୟମାନେ ଅଶୋକଙ୍କ ଚରିତ ପ୍ରବନ୍ଧ ବା ନାଟ୍ୟାକାରରେ ଲେଖିଲେ । ଶେଷରେ ସମସ୍ତେ ମିଶି ନିଜ ପ୍ରସ୍ତୁତ ଉପକରଣ ସାହାଯ୍ୟରେ ନାଟକଟିର ଅଭିନୟ କଲେ ।

**ରେଡ଼ିଓ ଭାଷଣ :**—ଆଜିକାଲି ଇଂଲଣ୍ଡ, ରୁଷ ଓ ଆମେରିକାର ଯୁକ୍ତରାଜ୍ୟରେ ଇତିହାସବିଶେଷଜ୍ଞମାନେ ସ୍କୁଲମାନଙ୍କୁ ରେଡ଼ିଓଯନ୍ତ୍ର ସାହାଯ୍ୟରେ ଶିକ୍ଷା ଦେବାର ଆରମ୍ଭ କରିଅଛନ୍ତି । ଭାରତରେ ମଧ୍ୟ ଏହି ପଦ୍ଧତିର ଆରମ୍ଭ ହୋଇଅଛି । ଏହି ପଦ୍ଧତିର ସାର୍ବଜନୀନ ପ୍ରଚଳନ ହେଲେ ଏବଂ ପ୍ରତି ସ୍କୁଲରେ ରେଡ଼ିଓଯନ୍ତ୍ର ରହିଲେ, ଛାତ୍ରମାନେ ବିଶେଷଜ୍ଞମାନଙ୍କଠାରୁ ଅଧ୍ୟାପନା ପାଇ-ପାରିବେ । ଶ୍ରେଣୀଶିକ୍ଷକ ପରବର୍ତ୍ତୀ ଗୋଟିଏ ଘଣ୍ଟାରେ ବିଶେଷଜ୍ଞଙ୍କ ବକ୍ତୃତାର ଶ୍ରେଣୀରେ ଆଲୋଚନା ସମାଲୋଚନା କଲେ, ପାଠ ସମ୍ବନ୍ଧରେ ଯଥେଷ୍ଟ ଉନ୍ନତି ହେବ ।



— ଦଶ —

# ଇତିହାସ ପରୀକ୍ଷା ପଦ୍ଧତି

ଶିକ୍ଷାଦାନ ପଦ୍ଧତିରେ ବୁଦ୍ଧି ବୃତ୍ତିର ଗୃଳନା, ବୋଧଶକ୍ତିର ବିକାଶ, ବିଗୃର ଶକ୍ତିର ପ୍ରୟୋଗ, ଘୋଷାପାଠର ନିରୁତ୍ସାହୀକରଣ ପ୍ରଭୃତିରେ ଜୋର ଦେଉଥିବା ବେଳେ ପରୀକ୍ଷାର କଥା ଉଠିଲେ, ସବୁ ଓଲଟା ହୋଇଯାଏ । ପରୀକ୍ଷାର ପ୍ରଶ୍ନଗୁଡ଼ିକ ଏପରି ଗୁନ୍ଥା ହୋଇଥାଏ ଯେ ଶିକ୍ଷକ ଓ ଛାତ୍ରମାନେ ପାଠ୍ୟପୁସ୍ତକ ଓ କେତେକ ବଜାରର ଟୀକାର ମୁଖସ୍ଥୀକରଣ ଉପରେ ମନୋନିବେଶ କରିବାକୁ ବାଧ୍ୟ ହୁଅନ୍ତି । ସୁତରାଂ ପ୍ରଥମ ବିଗୃର୍ଯ୍ୟ ବିଷୟ ରୂପେ ଆଧୁନିକ ପରୀକ୍ଷା ପଦ୍ଧତିର ପରିବର୍ତ୍ତନ ଚକ୍ଷୁ ଆଗରେ ରହିଅଛି ।

ଛାତ୍ରର ଐତିହାସିକ ଜ୍ଞାନ, ବିଗୃର ଓ ବୋଧଶକ୍ତି, ବୁଦ୍ଧି-ବୃତ୍ତି ଓ ପ୍ରୟୋଗକ୍ଷମତା ପରୀକ୍ଷା କରିବା ନିମନ୍ତେ ପ୍ରଶ୍ନଗୁଡ଼ିକର ପ୍ରଣାଳୀର ସାମୂହିକ ପରିବର୍ତ୍ତନ ଆବଶ୍ୟକ । ହେଲେହେଁ ଇତି-ହାସରେ ସ୍ମୃତିମୂଳକ ପ୍ରଶ୍ନ ବା ଘୋଷାପାଠକୁ ସମ୍ପୂର୍ଣ୍ଣ ରୂପେ ନିକାଶ କରି ଦିଆଯାଇ ପାରିବ ନାହିଁ । ଛାତ୍ର ଐତିହାସିକ ଘଟନାମାନ ପଢ଼ିଛି କି ନାହିଁ ଏବଂ ସେସବୁ ମନେରଖିଛି କି ନାହିଁ, ତାହା ମଧ୍ୟ ପରୀକ୍ଷା କରିବାକୁ ହେବ । ସୁତରାଂ, ଇତିହାସ ପରୀକ୍ଷାରେ ଶତକଡ଼ା ୧୫ ରୁ ୨୫ ମଧ୍ୟରେ ସେପ୍ରକାର ପ୍ରଶ୍ନ ନୂଆ ପ୍ରଣାଳୀରେ ଦିଆଯିବ ।

ନୂତନ ପ୍ରଣାଳୀର ବୋଧ ପରୀକ୍ଷାରେ ଇତିହାସ ପ୍ରଶ୍ନ କିପରି ହେବା ଉଚିତ, ତାହାର କେତେକ ଆଦର୍ଶ ନିମ୍ନରେ ଦିଆ ଯାଉଅଛି ।

(କ) ଚିନ୍ତାମୂଳକ ଓ ସ୍ମୃତିପରୀକ୍ଷା ପ୍ରଶ୍ନରେ ଛାତ୍ରମାନଙ୍କୁ ଗୋଟାଏ ଦୁଇଟା ଶବ୍ଦରେ ଉତ୍ତର ଦେବାକୁ ଦିଆଯିବ, ଯଥା.—
ବୌଦ୍ଧଧର୍ମର ପ୍ରତିଷ୍ଠାତା କିଏ ?
ନାଳନ୍ଦା ବିଶ୍ୱବିଦ୍ୟାଳୟର ସ୍ଥାପନ ବେଳେ ମଗଧରେ କିଏ ରାଜା ଥିଲେ ?
କୁତବସ୍ତମ୍ଭ କିଏ ନିର୍ମାଣ କରିଥିଲେ ?
ମିବାରର କେଉଁ ରାଜା ଆଲ୍ଲାଉଦ୍ଦିନ ଖିଲିଜିଙ୍କ ସଙ୍ଗେ ଯୁଦ୍ଧ କରିଥିଲେ ?
ୟୁରୋପରୁ ଭାରତକୁ ଜଳପଥ ପ୍ରଥମେ କିଏ ଦେଖାଇ-ଥିଲେ ?
ସିପାହୀଯୁଦ୍ଧରେ ଭାରତର କେଉଁ ବୀରରାଣୀ ଲଢ଼ିଥିଲେ ?

ସେହିପରି 'ହଁ', 'ନାହିଁ', ଠିକ୍ ଚିହ୍ନ, ଭୁଲ ଚିହ୍ନ, ଅନେକ ଶବ୍ଦ ମଧ୍ୟରୁ ଗୋଟିଏ ଶବ୍ଦ ବାଛି ଉତ୍ତର ଠିକ୍ କରିବା ପ୍ରଭୃତି ଦ୍ୱାରା ପରୀକ୍ଷା ହୋଇପାରିବ :

(୧) ଅଶୋକଙ୍କ ରାଜତ୍ୱର କଥା ମେଗାସ୍ଥିନିସ ବର୍ଣ୍ଣନା କରି-ଥିଲେ ( ହଁ, ନାହିଁ )।
ଶିବାଜୀ ନିଜ ନାମ ସ୍ୱାକ୍ଷର କରି ଜାଣୁ ନ ଥିଲେ ( ହଁ, ନାହିଁ )।
ଗାନ୍ଧି ଅହିଂସା ଯୁଦ୍ଧରେ ( ବିନା ଅସ୍ତ୍ରରେ ) ଭାରତର ସ୍ୱାଧୀନତା ଆଣିଥିଲେ ( ହଁ, ନାହିଁ )।
ଗୋଲଟେବଲ ବୈଠକରେ ଭାରତ ସ୍ୱାଧୀନତା ପାଇବାର ସ୍ଥିର ହୋଇଥିଲା ( ହଁ, ନାହିଁ )।

(୨) ପ୍ରକୃତ ଉତ୍ତର ପାଇବା ଲାଗି ବନ୍ଧନୀ ମଧ୍ୟରେ ଶବ୍ଦମାନଙ୍କ ମଧ୍ୟରୁ ଗୋଟିଏ ବାଛ :

ବକ୍‌ସାର ଯୁଦ୍ଧରେ ଜିଣିଲେ (କ୍ଲାଇବ, ଶାହଆଲମ, ବାହାଦୁର ସାହ, ବାଜିଦ ଆଲି, ମେଜର ମନ୍ରୋ)।
ଶିବାଜୀ (ପୁନା, ପ୍ରତାପଗଡ଼, ବିଜାପୁର, ଆଓରଙ୍ଗାବାଦ, ରାୟଗଡ଼) ଠାରେ ଆଫଜଲ ଖାଁଙ୍କୁ ବଧକଲେ।

(୩) ସବୁଠାରୁ ସମୀଚୀନ ଉତ୍ତରକୁ ଚିହ୍ନ ଦ୍ୱାରା ଦେଖାଇଦିଅ:
ସାହଜାହାନ ତାଜମହଲ ନିର୍ମାଣ କରିଥିଲେ,
କାରଣ,
ସେ ନିଜ ନାମ ଚିରସ୍ଥାୟୀ କରିବାକୁ ଚାହୁଁଥିଲେ,
ସେ ନିଜ ପ୍ରିୟତମା ପତ୍ନୀର ଅନୁରୋଧ ରକ୍ଷା କରିଥିଲେ,
ସେ ଅତ୍ୟନ୍ତ ବିଳାସ ଓ ଆଡ଼ମ୍ବରପ୍ରିୟ ଥିଲେ ।

(୪) ଶୂନ୍ୟ ସ୍ଥାନ ପୂରଣ କରିବା :—

ଆଲେକଜାଣ୍ଡାର—ଯୁଦ୍ଧରେ—ରାଜା—ପରାସ୍ତ କରିଥିଲେ ।
ଅଶୋକଙ୍କ ପୁତ୍ର—ଓ କନ୍ୟା—ସିଂହଳରେ ବୌଦ୍ଧଧର୍ମ ପ୍ରଚାର କରିଥିଲେ ।
ଭାରତଯୁକ୍ତରାଷ୍ଟ୍ରରେ—ଗୋଟି ରାଜ୍ୟ ଓ—ଗୋଟି କେନ୍ଦ୍ର ଶାସିତ ଅଞ୍ଚଳ ଅଛି ।

(୪) ଘଟନାକାଳର କ୍ରମରେ ନିମ୍ନଲିଖିତ ଉକ୍ତିମାନଙ୍କୁ ପୂର୍ବାପର କରି ସଜାଇ ଲେଖ :

ହର୍ଷବର୍ଦ୍ଧନ ଓ ପୁଲକେଶୀ ଯୁଦ୍ଧ କଲେ ।
କନୌଜ ମେଳାରେ ହୁଏଁନ ସାଂ ଯୋଗ ଦେଲେ ।
ହର୍ଷବର୍ଦ୍ଧନ ସିଂହାସନରେ ଅଭିଷେକ ହେଲେ ।
ହର୍ଷବର୍ଦ୍ଧନ ସମଗ୍ର ଉତ୍ତରଭାରତ ଜୟ କଲେ ।
ହର୍ଷବର୍ଦ୍ଧନ ଷଷ୍ଠ ବୌଦ୍ଧସଭା ବସାଇଲେ ।

(୬) ଭାରତର ସୀମା ମାନଚିତ୍ରରେ ନିମ୍ନଲିଖିତ ସ୍ଥାନ ଦେଖାଅ :—

ପାଟଳିପୁତ୍ର, ରାଜଗୃହ, ସାରନାଥ, ସାଞ୍ଚୀ, ଅଜନ୍ତା, ତକ୍ଷଶିଳା, ଉଜ୍ଜୟିନୀ, ନାଳନ୍ଦା, କାଶୀ ।

(୭) ଅଙ୍କ ସଙ୍ଗେ ଘଟନା ସଜାଇ ଗୋଟିଏ ଧାଡ଼ିରେ ରଖ :

ତୃତୀୟ ପାନିପଥ ଯୁଦ୍ଧ, ପଲାସୀ ଯୁଦ୍ଧ, ସିପାହୀ ଯୁଦ୍ଧ, ହଳଦିଘାଟ ଯୁଦ୍ଧ, ଆସାଇ ଯୁଦ୍ଧ ।
୧୫୭୬, ୧୭୫୭, ୧୭୬୧, ୧୮୦୩, ୧୮୫୭ ।

(୮) ନିମ୍ନରେ କେତେକ ବ୍ୟକ୍ତିଙ୍କ ନାମ ଓ ସେମାନେ କରିଥିବା ପ୍ରଧାନ କାର୍ଯ୍ୟ ଦିଆ ଯାଇଅଛି । କର୍ତ୍ତାଙ୍କ ନାମର ସମ୍ମୁଖରେ କାର୍ଯ୍ୟଟି ଲେଖ :

| | |
|---|---|
| ଚିନଇଲଖି | ମହାତ୍ମାଗାନ୍ଧି |
| ଦ୍ୱୈତଶାସନ | ଲର୍ଡ ୱେଲେସଲି |
| ଅସହଯୋଗ ଆନ୍ଦୋଳନ | ଆକବର |
| ସାମନ୍ତସନ୍ଧି | ଲର୍ଡକର୍ଜନ |
| କାଠଯୋଡ଼ିପଥରବନ୍ଧ | ମରକତକେଶରୀ |
| ସତୀଦାହପ୍ରଥାନିବାରଣ | ଲର୍ଡକ୍ଲାଇବ |
| ବଙ୍ଗବିଚ୍ଛେଦ | ଲର୍ଡକ୍ୟାନିଂ |

(୯) ସମ ସାମୟିକ ବିବରଣ, ସାହିତ୍ୟ, ମୌଳିକ ଉପାଦାନ (ଯଥା, ତାମ୍ରଫଳକ, ଶିଳାଲିପି)ରୁ ଗୋଟିଏ ବା ଅଧିକ ଅନୁଚ୍ଛେଦରୁ ଛାତ୍ରମାନଙ୍କୁ ନାନାପ୍ରକାର ପ୍ରଶ୍ନ କିଂବା ସିଦ୍ଧାନ୍ତ କରିବାକୁ ତର୍କମୂଳକ ପ୍ରଶ୍ନ କରିବାକୁ ଦିଆ ଯାଇ ପାରିବ । ଉଦାହରଣରେ କହାଯିବ, ମେଗାସ୍ଥିନିସ ଭାରତୀୟମାନଙ୍କୁ ସାତ ଜାତିରେ କିପରି ବିଭକ୍ତ କରିଥିଲେ ? ଧଉଳୀ ଶିଳାଲିପିରୁ ଅଶୋକଙ୍କ କଳିଙ୍ଗ ଯୁଦ୍ଧର ବିଶେଷ ବିବରଣ ସମ୍ବନ୍ଧରେ ପ୍ରଶ୍ନ କରାଯାଇ ପାରିବ ।

(୧୦)ଆବୃତ୍ତିମୂଳକ ପ୍ରଶ୍ନମାନଙ୍କରେ ମଧ୍ୟ ଛାତ୍ରମାନଙ୍କର ମନୋବୃତ୍ତି ଓ ବିଚାର ବା ସିଦ୍ଧାନ୍ତର ଆଲୋଚନାତ୍ମକ ପ୍ରଶ୍ନ ରହିପାରିବ :

ଅଶୋକ ଓ ଆକବରଙ୍କ କାର୍ଯ୍ୟ ଓ ଚରିତ ତୁଳନା କର ତୁମ୍ଭେ କାହାକୁ ଉଚ୍ଚତର ଆସନ ଦିଅ ଓ କାହିଁକି ?

(୧୧)ପରସ୍ପର ବିରୋଧୀ ବର୍ଣ୍ଣନା ଦେଉଥିବା ଦୁଇ ବା ଅଧିକ ମୌଳିକ

ଉପାଦାନରୁ ଅନୁଚ୍ଛେଦମାନ ଛାତ୍ରମାନଙ୍କ ହାତରେ ଦେଇ ତାହାଁରୁ ସତ୍ୟ ନିର୍ଣ୍ଣୟ କରିବାକୁ କୁହାଯିବ । ଅଶୋକ ନିଜ ଶିଳାଲିପିମାନଙ୍କରେ ଭ୍ରାତାମାନଙ୍କ ପ୍ରତି ଦୟାମିଶ୍ର ବ୍ୟବହାର ଦେଖାଇଥିବା ବର୍ଣ୍ଣନା କରିଛନ୍ତି । ବୌଦ୍ଧ ବିବରଣମାନଙ୍କରେ ଅଶୋକ ୯୯ ଭ୍ରାତାମାନଙ୍କୁ ହତ୍ୟା କରିଥିବା ବର୍ଣ୍ଣନା ଅଛି । ବୌଦ୍ଧଧର୍ମ ଗ୍ରହଣ କରିବା ପୂର୍ବେ ଅଶୋକଙ୍କୁ ଚଣ୍ଡାଶୋକ ଏବଂ ପଛକୁ ତାଙ୍କୁ ଧର୍ମାଶୋକ ରୂପେ ବୌଦ୍ଧଗ୍ରନ୍ଥମାନ ବର୍ଣ୍ଣନା କରିଅଛି । ଏପ୍ରକାର ପରସ୍ପର ବିରୋଧୀ ବର୍ଣ୍ଣନାମାନଙ୍କ ମଧ୍ୟରୁ କେଉଁଠା ବିଶ୍ୱାସଯୋଗ୍ୟ ଓ କାହିଁକି ? ହମୁଙ୍କର ମସ୍ତକ ଛେଦନ ନେଇ ଏହିପରି ବିଭିନ୍ନ ବର୍ଣ୍ଣନା ରହିଅଛି । ତନ୍ମଧ୍ୟରୁ କେଉଁଠା ସତ୍ୟ, ନିର୍ଣ୍ଣୟ କରିବା ନିମନ୍ତେ ଛାତ୍ରମାନେ ବିଚାର-ଶକ୍ତି ପ୍ରୟୋଗ କରିବେ ଏବଂ ନିଜ ସିଦ୍ଧାନ୍ତ ସପକ୍ଷରେ ଯୁକ୍ତି ଦେଖାଇବେ ।

(୧୨)ଚଳିତ ଐତିହାସିକ ଘଟନା ସମ୍ବନ୍ଧରେ ବିଭିନ୍ନ ସଂବାଦ ପତ୍ର ପତ୍ରିକା କି ମତ ଦେଉଛନ୍ତି । ଛାତ୍ରମାନେ ନିଜ ମନରେ ସେ ସମ୍ବନ୍ଧରେ କି ମତ ପୋଷଣ କରନ୍ତି । ତାହାଁର ସାର ତଥ୍ୟ ନିର୍ଣ୍ଣୟ ଓ ପ୍ରକୃତ ସିଦ୍ଧାନ୍ତରେ ଉପନୀତ ହେବା ପାଇଁ ଛାତ୍ର-ମାନଙ୍କୁ ଶିକ୍ଷକ ସାହାଯ୍ୟ କରିବେ ।

କାଶ୍ମୀରକୁ ମିଶାଇବା ପାଇଁ ଭାରତ ଓ ପାକିସ୍ଥାନ ଉଭୟେ ଦାବି କରିଛନ୍ତି । କାହାର ଦାବି ଠିକ ଓ କାହାର ଦାବି

ଅଯୌକ୍ତିକ । କାଶ୍ମୀର ରାଜ୍ୟସଭା ଭାରତରେ ମିଶିବା ପାଇଁ ନିଷ୍ପତ୍ତି କରିଅଛି । କାଶ୍ମୀରର ପ୍ରତିନିଧିମାନେ ଭାରତ ପାର୍ଲିମେଣ୍ଟରେ ଯୋଗ ଦେଇଛନ୍ତି । ପୃଥିବୀର ଜାତିସଂଘ କାଶ୍ମୀରର ଗଣଭୋଟ ଦ୍ୱାରା ଏହି ପ୍ରଶ୍ନ ସମାଧାନ ହେଉ ବୋଲି ନିଷ୍ପତ୍ତି କରୁଅଛି । ଭାରତ ଆପତ୍ତି କରୁଛି ଯେ ପାକିସ୍ଥାନ ବଳପୂର୍ବକ କାଶ୍ମୀରକୁ ମିଶାଇବା ନିମନ୍ତେ କାଶ୍ମୀର ଆକ୍ରମଣ କରି ଜାମ୍ମୁ ଅଞ୍ଚଳ ମାଡ଼ି ବସିଛି । କାଶ୍ମୀର ଓ ଜାମ୍ମୁରୁ ସୈନ୍ୟ ଅପସାରଣ କରିନେବା ନିମନ୍ତେ ଜାତିସଂଘ ପାକିସ୍ଥାନକୁ ଆଦେଶ ଦେଇଥିଲା । ପାକିସ୍ଥାନ ସେହି ଆଦେଶ ଅମାନ୍ୟ କରିଅଛି । ସେ ପ୍ରଥମେ ଜାମ୍ମୁ ଅଞ୍ଚଳ ଛାଡ଼ି-ଯାଉ । କାଶ୍ମୀର ରାଜ୍ୟ ସଭା କହୁଛି, ରାଜ୍ୟସଭା କାଶ୍ମୀର କଥା ନିଷ୍ପତ୍ତି କରିବ, ସେଥିରେ ଜାତିସଂଘ ହସ୍ତକ୍ଷେପ କରିବା ଅନୁଚିତ । ରାଜ୍ୟସଭା ଭାରତରେ ମିଶିବା ପାଇଁ ଥରେ ନିଷ୍ପତ୍ତି କରି ସାରିଥିବା ପରେ ଆଉ ଗଣଭୋଟ ନେବାର ଆବଶ୍ୟକତା ନାହିଁ । କାଶ୍ମୀର ରାଜ୍ୟସଭା କାଶ୍ମୀର ଜନତାର ପ୍ରତିନିଧି । ଜାମ୍ମୁ ଅଞ୍ଚଳ ପାକିସ୍ଥାନ ହାତରୁ ଆଣି ଜାତିସଂଘ କାଶ୍ମୀରକୁ ଦେଇଦେଉ । ଏପ୍ରକାର ବିବାଦମୂଳକ ପ୍ରଶ୍ନର ସିଦ୍ଧାନ୍ତ କରିବାରେ ଛାତ୍ରମାନେ ଉପଯୁକ୍ତ ଶିକ୍ଷା ପାଇବେ ।



— ଏଗାର —

# ପାଠଟୀକା ଓ ଉପାଦାନ

ଅଧ୍ୟାପୟିତବ୍ୟ ପାଠ ସମ୍ବନ୍ଧରେ ପୂର୍ଣ୍ଣ ଧାରଣା ଓ ପୂର୍ବ ପ୍ରସ୍ତୁତ ନ ଥିଲେ, ଶିକ୍ଷକ ପାଠର ପରିକଳ୍ପନା କରିପାରନ୍ତି ନାହିଁ । ସୁପ୍ରସ୍ତୁତ ଶିକ୍ଷକ ସୁନ୍ଦର ପାଠଟୀକା ଲେଖି ପାରନ୍ତି । ସୁନ୍ଦର ପାଠ-ଟୀକା ଲେଖି ପାରିବା ଶିକ୍ଷକ ସୁନ୍ଦର ପାଠ ଦେଇପାରନ୍ତି, ପୁଣି ସୁନ୍ଦର ପାଠ ଦେଇ ପାରିବା ଶିକ୍ଷକ ସୁନ୍ଦର ପାଠଟୀକା ଲେଖି-ପାରନ୍ତି । ସୁନ୍ଦର ପାଠଟୀକା ଲେଖିବା ଓ ସୁନ୍ଦର ପାଠ ଦେବା ଉଭୟ କାର୍ଯ୍ୟ ନିମନ୍ତେ ପାଠର ସୁନ୍ଦର ପରିକଳ୍ପନା ଅତ୍ୟାବଶ୍ୟକ । ସୁନ୍ଦର ପରିକଳ୍ପନା ନିମନ୍ତେ ପାଠ ସମ୍ବନ୍ଧରେ ବହୁ ଅଧ୍ୟୟନ, ଗବେଷଣା ଓ ଚିନ୍ତା ଆବଶ୍ୟକ । ପାଠ ସମ୍ବନ୍ଧରେ ପୂର୍ଣ୍ଣ ଓ ପରିଷ୍କାର ଧାରଣା ତଥା ପୂର୍ବ ପ୍ରସ୍ତୁତ ନ ଥିଲେ, ପାଠର ନିର୍ଦ୍ଦୋଷ ପରିକଳ୍ପନା, ସୁନ୍ଦର ପାଠଟୀକା ବା ସୁନ୍ଦର ପାଠଦାନ ଅସମ୍ଭବ ଅଟେ । ସେଥିପାଇଁ ଇତିହାସ ଶିକ୍ଷାଦାନ ନିମନ୍ତେ ଦକ୍ଷ, ମୌଳିକ ଦକ୍ଷତାସମ୍ପନ୍ନ ଓ ପ୍ରତ୍ୟୁତ୍ପନ୍ନମତି ବ୍ୟକ୍ତି ନିଯୁକ୍ତ ହେବା ସର୍ବବାଦୀ-ସମ୍ମତ ସତ୍ୟ ଅଟେ । ଏପ୍ରକାର ଶିକ୍ଷକଙ୍କ ସାଧାରଣ ଅଭାବ ଯୋଗୁଁ ଆଜିକାଲି ବିଦ୍ୟାଳୟମାନଙ୍କରେ ଇତିହାସ ଶିକ୍ଷା ନୀରସ ଓ ନିଷ୍ଫଳ ହେଉଅଛି ।

ଏପ୍ରକାର ଶିକ୍ଷକଙ୍କ ଅଭାବର ଏକ ସହଜ ଅନୁମେୟ ଓ ସାଧାରଣ କାରଣ ହେଉଅଛି, "ଶିକ୍ଷକଙ୍କ ସମାଜରେ ଆସନ" । କେହି ଶିକ୍ଷକ ହେବାକୁ ଚାହାନ୍ତି ନାହିଁ । ସାଧାରଣତଃ ବୁଦ୍ଧିମାନ ଛାତ୍ରମାନେ ଅଙ୍କ, ବିଜ୍ଞାନ ପ୍ରଭୃତିରେ ଦକ୍ଷତା ଅର୍ଜନ କରି ଅପେକ୍ଷାକୃତ ଅଧିକ ଅର୍ଥକରୀ ଡାକ୍ତରି, ଇଞ୍ଜିନିୟରିଂ ପ୍ରଭୃତି ବ୍ୟବସାୟ ଆଡ଼କୁ ଚାଲିଯାନ୍ତି । ଯାହା ଅବଶିଷ୍ଟ ରହନ୍ତି, ଅଧିକ ଲାଭବାନ୍ ହେବାକୁ ଅନ୍ୟ ଭଲ ଚାକିରି ଖୋଜନ୍ତି । ଯେଉଁମାନେ ସବୁଆଡ଼ୁ ବ୍ୟର୍ଥ ହୋଇ ପଡ଼ିରହନ୍ତି, ଶେଷକୁ ଅଧ୍ୟାପନାକୁ ବ୍ୟବସାୟ ରୂପେ ଆଦରିନିଅନ୍ତି । ସମାଜର ଉନ୍ନୟନ କରିବାକୁ ହେଲେ, ଦେଶରେ ଉତ୍କୃଷ୍ଟ ଧରଣର ଶିକ୍ଷା ପ୍ରଚଳନ କରିବାକୁ ହେବ । ଉତ୍କୃଷ୍ଟ ଧରଣର ଶିକ୍ଷା ପ୍ରଚଳନ ନିମନ୍ତେ ଉନ୍ନତମସ୍ତିଷ୍କ ଶିକ୍ଷକ ଆବଶ୍ୟକ । ଏପ୍ରକାର ଶିକ୍ଷକଙ୍କୁ ଶିକ୍ଷାକ୍ଷେତ୍ରକୁ ଆକର୍ଷଣ କରିବା ନିମନ୍ତେ ସମାଜରେ ଶିକ୍ଷକଙ୍କୁ ଉଚ୍ଚତମ ଆସନ ଦେବାକୁ ହେବ । ଅନ୍ୟ କୌଣସି ବିଭାଗ ଅପେକ୍ଷା ଶିକ୍ଷାବିଭାଗରେ ଉଚ୍ଚତମ ଦରମାହାର ରହିବା ବାଞ୍ଛନୀୟ ।

ଶାସକମାନେ କହିପାରନ୍ତି, ଜଜ୍, ମାଜିଷ୍ଟ୍ରେଟ୍, ସୈନିକ, ପୋଲିସ ପ୍ରଭୃତିରେ ଅଧିକ ଖର୍ଚ୍ଚ ନ କଲେ, ଦେଶର ଶାସନରେ ବିଶୃଙ୍ଖଳା ହେବ । କିନ୍ତୁ ଦେଶରେ ଉତ୍କୃଷ୍ଟ ଧରଣର ଶିକ୍ଷା ପ୍ରଚଳନ ହେଲେ, ଶିକ୍ଷାୟତନରୁ ସୁନାଗରିକ ବାହାରିଲେ, କଚେରି, ଅଦାଲତ, ଜେଲଖାନାର ଆବଶ୍ୟକତା ରହିବ ନାହିଁ । କେବଳ ଇତିହାସର ଉପଯୁକ୍ତ ଶିକ୍ଷଣ ଦେଶରେ କଚେରି, ଅଦାଲତ, ଜେଲଖାନାର ଆବଶ୍ୟକତାକୁ ଊଣା କରିଦେଇ ପାରିବ ।

ବହୁଦିନ ପୂର୍ବେ ହାର୍ବାର୍ଟ ଶିକ୍ଷାଦାନ ଓ ପାଠଟୀକା ନିମନ୍ତେ "ପଞ୍ଚସୋପାନ ପଦ୍ଧତି" ପ୍ରଣୟନ କରିଥିଲେ । ଏହା ସାଧାରଣରେ ଇଂରାଜୀରେ "Herbartian Steps" ନାମରେ ପରିଚିତ । ଉପକ୍ରମ ବା ପୂର୍ବାର୍ଜିତ ଜ୍ଞାନ ପରୀକ୍ଷା ଓ ଉଦ୍ଦେଶ୍ୟ ଜ୍ଞାପନ, ଜ୍ଞାନ ପ୍ରଦାନ, ତୁଳନା (ନୂତନ ଜ୍ଞାନର ବିଷୟକୁ ପୂର୍ବ ଜ୍ଞାନର ବିଷୟ ସଙ୍ଗେ ତୁଳନା କରାଇବାଦ୍ୱାରା ନୂତନ ଜ୍ଞାନର ଅବବୋଧ), ବର୍ଗୀକରଣ (ସାଧାରଣ ସତ୍ୟରେ ଉପନୀତ ହେବା) ଏବଂ ପରୀକ୍ଷା (ନୂତନ ଜ୍ଞାନର ପ୍ରୟୋଗ) ହାର୍ବାର୍ଟଙ୍କ ପଞ୍ଚସୋପାନ ପଦ୍ଧତିର ଅନ୍ତର୍ଗତ ।

Introduction and Statement of Aim— **ଉପକ୍ରମ ଓ ଲକ୍ଷ୍ୟଜ୍ଞାପନ** :—ପ୍ରଥମ ସୋପାନରେ ବା ଉପକ୍ରମରେ ଅଧ୍ୟାପୟିତବ୍ୟ ନୂତନ ଜ୍ଞାନକୁ ଛାତ୍ରର ପୂର୍ବ ଜ୍ଞାନ ସଙ୍ଗରେ ସଂଯୁକ୍ତ କରିବା ନିମନ୍ତେ ଅର୍ଥାତ୍ ପୂର୍ବ ଜ୍ଞାନ ଉପରେ ଭିତ୍ତି କରି ନୂତନ ଜ୍ଞାନ ଦେବା ନିମନ୍ତେ, ପୂର୍ବାର୍ଜିତ ଜ୍ଞାନର ସଂକ୍ଷେପ ପରୀକ୍ଷା କରାଯାଏ । ଏହା ପ୍ରକୃତରେ ଜ୍ଞାନ ପରୀକ୍ଷା ନୁହେଁ, ପୂର୍ବଜ୍ଞାନର ଉଦ୍‌ବୋଧନ ବା ଆଲୋଡ଼ନ ( Motivation ) । ଛାତ୍ରର ମନକୁ ଏତଦ୍ୱାରା ଦାତବ୍ୟ ଜ୍ଞାନ ଆଡ଼କୁ ଆକର୍ଷଣ ବା ସଚେଷ୍ଟ କରାଯାଏ । ଏହା କରି ସାରି ଶିକ୍ଷକ ଏହି ସୋପାନରେ ନିଜ ଉଦ୍ଦେଶ୍ୟ ଛାତ୍ରମାନଙ୍କୁ ବିଜ୍ଞାପନ କରନ୍ତି ଏବଂ ପୂର୍ବାର୍ଜିତ ଜ୍ଞାନ ସଙ୍ଗେ ନୂତନ ବିଷୟକୁ ସଂଯୋଗ କରନ୍ତି । ଛାତ୍ର ନୂତନ ଜ୍ଞାନର ସୂଚନା ପାଇ, ଶିକ୍ଷକ କଣ ପଢ଼ାଇବାକୁ ଯାଉଛନ୍ତି, ଜାଣିବା ନିମନ୍ତେ ଆଉ

ଅନ୍ଧକାରରେ ଅଣ୍ଡାଳି ହୁଏ ନାହିଁ ଏବଂ ସହଜରେ ନୂତନ ପ୍ରାପ୍ତବ୍ୟ ଜ୍ଞାନର ସଙ୍ଗତ ଧଡ଼ିପାରେ ।

Presentation (ଜ୍ଞାନଦାନ ):—ଦ୍ୱିତୀୟ ବା ଜ୍ଞାନ-ଦାନ ସୋପାନରେ ଅଧ୍ୟାପୟିତବ୍ୟ ନୂତନ ଜ୍ଞାନକୁ ଆବଶ୍ୟକ ମତେ କେତେକ ବିଭାଗରେ ( ସାଧାରଣତଃ ଦୁଇ ବା ତିନି ) ବିଭକ୍ତ କରି ଛାତ୍ରମାନଙ୍କୁ ନୂତନ ଜ୍ଞାନ ଦିଆଯାଏ ଏବଂ ଛାତ୍ରମାନେ ଜ୍ଞାନ ଠିକ୍ ରୂପେ ଗ୍ରହଣ କରିପାରିଲେ କି ନାହିଁ, ଜାଣିବା ନିମନ୍ତେ ଆବଶ୍ୟକୀୟ ବିଭାଗୀୟ ପ୍ରଶ୍ନ ପ୍ରତି ବିଭାଗର କାର୍ଯ୍ୟ ପରେ ଅନୁକ୍ରମରେ ପଚରାଯାଏ ।

କେହି କେହି ପ୍ରତି ବିଭାଗରେ ବିଭାଗୀୟ ପ୍ରଶ୍ନ ପରେ ପଠିତ ବିଷୟର ସାରାଂଶ କଳାପଟାରେ ଲେଖିଦେବାକୁ କହନ୍ତି, କିନ୍ତୁ ସମଗ୍ର ପାଠର ସଂକ୍ଷିପ୍ତ ସାରାଂଶ ସମଗ୍ର ଶିକ୍ଷାଦାନ କାର୍ଯ୍ୟର ଶେଷରେ ବା ଶେଷ ସୋପାନର ଶେଷ ଭାଗରେ କଳାପଟାରେ ଛାତ୍ରମାନଙ୍କ ସହଯୋଗରେ ଲେଖା ହେବା ଭଲ ବୋଲି ଅଧିକାଂଶ ଶିକ୍ଷାବିତ୍ କହନ୍ତି ।

Comparison—( ତୁଳନାତ୍ମକ ଆବୃତ୍ତି ) :—ତୃତୀୟ ସୋପାନରେ ପୂର୍ବ ପଠିତ କୌଣସି ବିଷୟ ବା ଜ୍ଞାନ ସଙ୍ଗେ ନୂତନ ପଠିତ ବିଷୟ ବା ଜ୍ଞାନର ତୁଳନା କଲେ, ନୂତନ ଜ୍ଞାନ ଛାତ୍ରର ସମଧିଗତ ଓ ସୁବୋଧ ବା ଦୃଢ଼ ହୁଏ । ଉଦାହରଣ ସ୍ୱରୂପ, ଆକବର ସମ୍ବନ୍ଧୀୟ ପାଠରେ ଶିକ୍ଷକ ଆକବରଙ୍କୁ ଜଣେ ବଡ଼ ସମ୍ରାଟ୍ ବୋଲି ପ୍ରତିପାଦନ କଲେ । ଅଶୋକ ଓ ଆକବରଙ୍କ ମଧ୍ୟରୁ କିଏ ବଡ଼ ଏବଂ କେଉଁ କେଉଁ ଗୁଣ କାର୍ଯ୍ୟ ସକାଶେ ଅଶୋକ

ଆକବରଙ୍କଠାରୁ ବଡ଼, ତାହା ଯଦି ଛାତ୍ରମାନେ ଶିକ୍ଷକଙ୍କ ସହ-ଯୋଗରେ ତୁଳନାଦ୍ୱାରା ପ୍ରତିପାଦନ କରିବେ, ତେବେ ଛାତ୍ରମାନଙ୍କ ନୂଆ ଜ୍ଞାନ ସେମାନଙ୍କ ମନରେ ସ୍ପଷ୍ଟ ରୂପେ ଅଙ୍କିତ ହୋଇପାରିବ ।

Generalisation—(ବର୍ଗୀକରଣ) :—ଚତୁର୍ଥ ବା ବର୍ଗୀକରଣ ସୋପାନରେ ବିଭିନ୍ନ ଘଟନା ବା ତଥ୍ୟ ପୁନରାଲୋଚନା କରି ଶିକ୍ଷକ ଛାତ୍ରମାନଙ୍କୁ ଏକ ସାଧାରଣ ସତ୍ୟ ବା ସିଦ୍ଧାନ୍ତରେ ଉପନୀତ କରନ୍ତି । ଆଓରଙ୍ଗଜେବଙ୍କ ଧର୍ମନୀତି ଯୋଗୁଁ ତାଙ୍କ ରାଜ୍ୟର ଚାରି ଆଡ଼େ ବିଦ୍ରୋହ ପ୍ରବଳ ହେଲା, ଛାତ୍ରମାନେ ଏପ୍ରକାର ସିଦ୍ଧାନ୍ତ ଆବିଷ୍କାର କରନ୍ତି ।

Application (ପ୍ରୟୋଗ) :—ପଞ୍ଚମ ବା ପରୀକ୍ଷା (ପ୍ରୟୋଗ) ସୋପାନରେ ଛାତ୍ରମାନେ ପ୍ରାପ୍ତ ଜ୍ଞାନକୁ ନୂତନ କ୍ଷେତ୍ର ବା ସମସ୍ୟାରେ ପ୍ରୟୋଗ କରନ୍ତି । ଏ କାର୍ଯ୍ୟ ଗଣିତ ବା ବିଜ୍ଞାନ ବିଷୟର ଅଧ୍ୟାପନାରେ ସୁଚାରୁରୂପେ ହୋଇପାରେ । ତ୍ରିଭୁଜର ଦୁଇ ଗୋଟି ବାହୁ ସମାନ ହେଲେ, ସମାନ ବାହୁମାନଙ୍କର ସମ୍ମୁଖୀନ କୋଣମାନ ସମାନ ହୁଏ । ଏହି ସୂତ୍ର ଶିଖିବା ପରେ ପ୍ରୟୋଗ ସୋପାନରେ ଛାତ୍ରମାନେ ସେହି ସତ୍ୟକୁ ଅନ୍ୟ କ୍ଷେତ୍ରରେ ପ୍ରୟୋଗ କରନ୍ତି । କିନ୍ତୁ ଇତିହାସରେ ଏପ୍ରକାର ପ୍ରୟୋଗ ଅଧିକାଂଶ ସ୍ଥଳରେ ସମ୍ଭବ ନୁହେଁ । ତେବେ ପ୍ରବୀଣ ଶିକ୍ଷକ ଏ କାର୍ଯ୍ୟ ଅନେକ ପରିମାଣରେ ସାଧନ କରିବାରେ ସମର୍ଥ ହୁଅନ୍ତି ।

ତୃତୀୟ ପାନିପଥ ଯୁଦ୍ଧର ଅଧ୍ୟାପନାରେ ଶିକ୍ଷକ ଯଦି ଛାତ୍ର-ମାନଙ୍କୁ ଏକ ନୂତନ ସମସ୍ୟା ଦିଅନ୍ତି, (ସଦାଶିବ ରାଓ ଭାଓ ଯଦି ଗରିଲା ଯୁଦ୍ଧ ଅବଲମ୍ବନ କରିଥାନ୍ତେ, ପରିଣାମ କଣ ହୋଇଥାନ୍ତା ?

କିମ୍ବା ଅଶୋକଙ୍କ କଳିଙ୍ଗଯୁଦ୍ଧରେ ଯଦି କଳିଙ୍ଗବାସୀ ରଣ ଯୁଦ୍ଧରେ ଆତ୍ମସମର୍ପଣ କରିଥାନ୍ତେ, ପରିଣାମ କଣ କଣ ହୋଇଥାନ୍ତା ? ଇତ୍ୟାଦି) । ଶିକ୍ଷକ ଏପ୍ରକାର ଚେଷ୍ଟା କଲେ, ପ୍ରାପ୍ତ ଜ୍ଞାନକୁ ନୂତନ କ୍ଷେତ୍ରରେ ପ୍ରୟୋଗ କରି ଛାତ୍ରମାନେ ବିଗ୍ଭର ଓ ସିଦ୍ଧାନ୍ତ କରିବାକୁ ସୁଯୋଗ ପାନ୍ତି ।

ଇତିହାସ ଅଧ୍ୟାପନାରେ ପ୍ରୟୋଗ ସୋପାନର କାର୍ଯ୍ୟ ଯଥାଯଥ ବା ସମ୍ୟକ୍ ରୂପେ ସାଧିତ ହୋଇପାରେ ନାହିଁ ବୋଲି କିମ୍ବା ଶିକ୍ଷକଙ୍କ କାର୍ଯ୍ୟ ଅତି କଠିନ ହୋଇପଡ଼େ ବୋଲି ସାଧାରଣତଃ ଶିକ୍ଷକମାନେ ଏକ୍ଷେତ୍ରରେ ଚେଷ୍ଟା ନ କରି ଏବଂ କେତେକ ଆଲୋଚନାମୂଳକ ପ୍ରଶ୍ନ କରି ସମଗ୍ର ପାଠର ପୁନରାବୃତ୍ତି ଛାତ୍ରମାନଙ୍କଦ୍ୱାରା କରାଇ ନିଅନ୍ତି ଏବଂ ଏହି ସୋପାନର କାର୍ଯ୍ୟ ଶେଷ କରନ୍ତି, ତଥା ପାଠ ଶେଷରେ କଳାପଟାରେ ପାଠର ସାରାଂଶ ଲେଖିଦେଇ ନିଜ କାର୍ଯ୍ୟ ଶେଷ କରନ୍ତି ।

ହାରବାର୍ଟଙ୍କ ପଞ୍ଚସୋପାନ ପଦ୍ଧତି ସମ୍ବନ୍ଧରେ ସଂକ୍ଷେପରେ ଏପର୍ଯ୍ୟନ୍ତ ଯେତିକି କହାଗଲା, ସେଥିରୁ ସହଜରେ ବୁଝାଯିବ ଯେ ସେହି ପଦ୍ଧତି ଆଧୁନିକ ଇତିହାସ ଅଧ୍ୟାପନାର ନୂତନ ଦୃଷ୍ଟିକୋଣ ଦୃଷ୍ଟିରେ ଅତି ପ୍ରାଚୀନ, ଧରାବନ୍ଧା ଓ ଗତାନୁଗତିକ ହୋଇ ପଡ଼ିଅଛି ଏବଂ ଏଣିକି ତାହା ଆଉ ସମୟୋପଯୋଗୀ ବିବେଚିତ ହେବାର ନୁହେ । କେତେକ ଆଧୁନିକ ନୂତନ ଦୃଷ୍ଟିକୋଣ ଅଧ୍ୟାପନାର ଦୃଷ୍ଟାନ୍ତ ଯୋଗେ ଏହି ଉକ୍ତିର ବିଶ୍ଳେଷଣ କରଯାଉ ।

**୧। ମୌଳିକ ଉପାଦାନ ପଦ୍ଧତି** (Source Method):—
ଶିକ୍ଷକ ଛାତ୍ରମାନଙ୍କୁ ମହେଞ୍ଜୋଦାରୋ ଓ ହରପ୍ପା ବା ସୈନ୍ଧବ

ଅବବାହିକାର ପ୍ରାଚୀନ ଭାରତୀୟ ସଭ୍ୟତା ସମ୍ବନ୍ଧରେ ଏକ ପାଠ ଦେବାକୁ ଯାଉଛନ୍ତି । ଏହି ପାଠରେ ପୂର୍ବର ପୂର୍ବାର୍ଜିତ ଜ୍ଞାନର ଆଲୋଡ଼ନ କରିବାର କୌଣସି ଆବଶ୍ୟକତା ନାହିଁ । ପାଠରେ ସିଧା ସଳଖ ଛାତ୍ରମାନଙ୍କୁ ଉପନୀତ କରାଯାଇ ପାରିବ । ତେଣୁ ପୂର୍ବାର୍ଜିତ ଜ୍ଞାନ ପ୍ରସଙ୍ଗରେ ବୃଥା ସମୟର ଅପଚୟ କରିବା ଅନୁଚିତ ।

ଶିକ୍ଷକ ଭାରତର ମାନଚିତ୍ର ନେଇ ସିନ୍ଧୁ ଅବବାହିକାର ମହେଞ୍ଜୋଦାଡ଼ୋ ଓ ହରପ୍ପାର ସ୍ଥାନ ନିର୍ଦ୍ଦେଶ କରିଦେଲେ । ଉଦ୍ଦେଶ୍ୟ ସ୍ଥାପନ କରି କହିଦେଲେ, ଏହି ଦୁଇ ସ୍ଥାନରେ ଅତି ପ୍ରାଚୀନ କାଳରେ (ପାଞ୍ଚ ସାତ ହଜାର ବର୍ଷ ପୂର୍ବେ) କି ପ୍ରକାର ସଭ୍ୟତା ଥିଲା, ଆଜି ତାହାର ଆଲୋଚନା କରିବା ।

ଶିକ୍ଷକ ବ୍ଲାକବୋର୍ଡ଼ରେ ଲେଖିଦେଲେ, "ସିନ୍ଧୁ ଅବ-ବାହିକାର ପ୍ରାଚୀନ ସଭ୍ୟତା" ।

ଶିକ୍ଷକ ପ୍ରଥମ ସୋପାନରେ ଛାତ୍ରମାନଙ୍କର କୌତୂହଳ ଓ ଆଗ୍ରହ ଜନନ ( Motivation ) ନିମନ୍ତେ ଅର୍ଥାତ୍ ଛାତ୍ରମାନଙ୍କୁ ବିଷୟ ଜାଣିବାକୁ ସ୍ୱୟଂଚେଷ୍ଟ କରିବା ନିମନ୍ତେ ସେହି ସଭ୍ୟତା ପ୍ରଦର୍ଶକ ଛବିମାନ ( ସୁବିଧା ଥିଲେ, ଯାଦୁଘରେ ଥିବା ପ୍ରତ୍ୟକ୍ଷ ଦ୍ରବ୍ୟମାନ ) ଯଥାଯଥ ରୂପେ ସଜାଇ ଶ୍ରେଣୀରେ ଦେଖାଇଦେଲେ । ଛବିମାନ ଦେଖିବା ମାତ୍ରେ ଛାତ୍ରମାନଙ୍କର ଆଗ୍ରହ ଓ କୌତୂହଳ ଜାତ ହେବ । ସେମାନେ ନିଜେ ଶିକ୍ଷକଙ୍କୁ ନାନାପ୍ରକାର ପ୍ରଶ୍ନ ପଚାରିବେ । ଶିକ୍ଷକ ସେମାନଙ୍କ ପ୍ରଶ୍ନର ଉପଯୁକ୍ତ ଉତ୍ତର ଦେବେ ଏବଂ ନିଜେ ଚାଳକ ପ୍ରଶ୍ନ ଯୋଗେ ଛାତ୍ରମାନଙ୍କ ପ୍ରକୃତ ପର୍ଯ୍ୟବେକ୍ଷଣ ଓ ସ୍ୱୟଂଶିକ୍ଷାରେ ସାହାଯ୍ୟ କରିବେ ।

ଛବିମାନ ଏପରି କ୍ରମେ ସଜା ଯାଇଥିବ ଯେ ଶିକ୍ଷକଙ୍କୁ ସମଗ୍ର ପାଠଟି ଧାରାବାହିକ କ୍ରମରେ ଆଲୋଚନା କରିବାକୁ ସୁବିଧା ହେବ ।

(କ) ନଗରଯୋଜନା:—ପୂର୍ତ୍ତକାର୍ଯ୍ୟ ଓ ମ୍ୟୁନିସିପାଲିଟି ବ୍ୟବସ୍ଥା ପଥ ଓ ଗଳି, ନର୍ଦ୍ଦମା, ସ୍ନାନାଗାର, ସଂରକ୍ଷଣବାପୀ, କୂପ ଓ ପାଇଖାନା ।

(ଖ) ଶିଳ୍ପଦ୍ରବ୍ୟ:—ନରନାରୀ ମୂର୍ତ୍ତି, ଜୀବଜନ୍ତୁର ଛବି, ମୃତ୍ପାତ୍ର, ସୁବର୍ଣ୍ଣ ହାର, ସୁନାରୂପା, ଟିଣ, ତମ୍ବା, ସିଣ, ବ୍ରଞ୍ଜ ଧାତୁ, ନାନାପ୍ରକାର ଗହଣା ।

(ଗ ଯୁଦ୍ଧ:—ଧନୁଶର, ଗଦା, ଛୁରି, ବର୍ଚ୍ଛା, କୁଠାର ।

(ଘ) ଅର୍ଥନୈତିକ ଜୀବନ – ଶିଳ୍ପ ମୋହର ଓ ମୁଦ୍ରା ।

(ଙ) ଧର୍ମ.—ଶକ୍ତି ଓ ମାତୃକା ପୂଜା, ଶିବ ଓ ଲିଙ୍ଗ, ବୃଷ, ପଶୁ ଓ ସର୍ପ ପୂଜା, ଶବାଧାର ।

(ଚ) ବାଣିଜ୍ୟ:— ଶିଲମୋହରର ଲିପି, ପ୍ରାଚୀନତା ଓ ବୈଦେଶିକ ବାଣିଜ୍ୟ ।

(ଛ) ଚଳୌହର ଅଭାବ:—ସଭ୍ୟତାର କାଳର ପ୍ରାଚୀନତା ।

କଥୋପକଥନ ଓ ପ୍ରଶ୍ନୋତ୍ତର ବେଳେ ଶିକ୍ଷକ ମୌର୍ଯ୍ୟ-ଯୁଗର ମ୍ୟୁନିସିପାଲିଟି ବ୍ୟବସ୍ଥା ଓ ଆଧୁନିକ ମ୍ୟୁନିସିପାଲିଟି ବ୍ୟବସ୍ଥା ସଙ୍ଗେ ତୁଳନା କରାଇଦେଲେ । ଆଧୁନିକ ବା ବିଂଶ ଶତାବ୍ଦୀର ଉନ୍ନତ ଲଣ୍ଡନ ଓ ଲଣ୍ଡନର ବଣ୍ଡ ଷ୍ଟ୍ରିଟର ନିର୍ମିତ ହାରର ଛବି ଦେଖାଇ ସୈନ୍ଧବ ହାରର ଉତ୍କର୍ଷ ପ୍ରତିପାଦନ କରାଇଲେ । ଆଧୁନିକ ଭାରତୀୟ ଧର୍ମ ସଙ୍ଗେ ସୌସାଦୃଶ୍ୟ ଦେଖାଇଦେଲେ ।

ଭାରତର ବୌଦ୍ଧ ଯୁଗ ଓ ଆଧୁନିକ ଯୁଗ ସହିତ ତୁଳନା କରି ବୈଦିକ ସଭ୍ୟତାର କାଳ ନିରୂପଣରେ କିଞ୍ଚିତ୍ ସୂଚନା ଦେବେ ।

ଶିକ୍ଷକ ଏ ସୋପାନରେ ଜ୍ଞାନ ପ୍ରଦାନ କଲେ ନାହିଁ, ଛାତ୍ର-ମାନଙ୍କୁ ଜ୍ଞାନ ଆବିଷ୍କାରରେ ଓ ସ୍ୱୟଂଶିକ୍ଷାରେ ସାହାଯ୍ୟ ବା ପଥ-ପ୍ରଦର୍ଶନ କଲେ ।

ଶେଷରେ ଦ୍ୱିତୀୟ ସୋପାନ ବା ପ୍ରୟୋଗ ଆକାରରେ କେତେକ ପ୍ରଶ୍ନ କରି ଛାତ୍ରମାନଙ୍କର ଲବ୍ଧ ଜ୍ଞାନକୁ ସଜାଡ଼ି, ନିଜର କଳାପଟା ସାରାଂଶ ଲେଖିଦେବେ ।

ଅତଏବ ଏହି ପାଠରେ ଶିକ୍ଷକଙ୍କ କାର୍ଯ୍ୟ ଦୁଇଟି ମାତ୍ର ସୋପାନରେ ଶେଷ ହେଲା, —

(୧) ଆଗ୍ରହ ଜନନ ( Motivation ) ଓ ଜ୍ଞାନ ଆବିଷ୍କାର ( Discovery of Knowledge ) ଏବଂ (୨) ପ୍ରୟୋଗ ( Application ) ବା ଜ୍ଞାନର ସଙ୍କଳୀକରଣ ( Organisation of Knowledge ) । ଅର୍ଥାତ୍ ହାର୍ବାର୍ଟଙ୍କ ପଞ୍ଚସୋପାନ ଏହି ଏଠାରେ ସଂପୂର୍ଣ୍ଣ ରୂପେ ବଦଳିଗଲା; ତାଙ୍କର ଜ୍ଞାନଦାନ ( Presentation ) ସୋପାନର ନୀରସ କାର୍ଯ୍ୟ ବା ଛାତ୍ରମାନେ ନିଶ୍ଚେଷ୍ଟ ହୋଇ ଶିକ୍ଷକଙ୍କ ବର୍ଣ୍ଣନା ଶୁଣିବା ପଦ୍ଧତି ସେମାନଙ୍କ ସଚେଷ୍ଟ ସକ୍ରିୟ ଜ୍ଞାନ ଆବିଷ୍କାର ପଦ୍ଧତିରେ ପରିଣତ ହେଲା, ଯଦ୍ୱାରା ସେମାନଙ୍କର କାର୍ଯ୍ୟରେ ଅଧିକ ଆଗ୍ରହ ଜାତ ହେଲା, ସେମାନେ ନିଜେ ଜ୍ଞାନ ଆବିଷ୍କାର କରିବାଦ୍ୱାରା ବିଷୟଟି ଭଲ ରୂପେ ବୁଝିପାରିଲେ ଏବଂ ଶିଖିପାରିଲେ । ଶିକ୍ଷକଙ୍କୁ ମୁଣ୍ଡ ବାଡ଼ାଇ ହୋଇ ଗୁଡ଼ାଏ କେବଳ ବକବକ ହେବାକୁ ପଡ଼ିଲା ନାହିଁ, ଅଥଚ

କାର୍ଯ୍ୟଟି ଗୁଡ଼ିମାନଙ୍କର ଚିତ୍ତାକର୍ଷକ, ବୋଧଗମ୍ୟ ଓ ହୃଦ୍‌ଗତ ହେବାରେ ଅଧିକ ଉପଯୋଗୀ ହେଲା ।

ଏଥିପ୍ରକାରେ ଅବଶ୍ୟ ବିଦ୍ୟାଳୟରେ ଅନେକ ଗୁଡ଼ିଏ ଛବି ସମ୍ପାଦ ରଖିବାକୁ ହେବ ଏବଂ ବିଦ୍ୟାଳୟରେ ଗୋଟିଏ କ୍ଷୁଦ୍ର ଐତିହାସିକ ମ୍ୟୁଜିୟମ ରଖିବାକୁ ହେବ । ଏହି ଐତିହାସିକ ମ୍ୟୁଜି-ୟମ ବିଷୟରେ ପୂର୍ବ ପୃଷ୍ଠାମାନଙ୍କରେ ଆଲୋଚନା କରା ଯାଇଅଛି । ମୁଦ୍ରିତ ଛବିମାନ ଯୋଗାଡ଼ କରିବାକୁ ହେବ ଏବଂ ଅନେକ ସ୍ଥଳରେ ସେଗୁଡ଼ିକ ହାତରେ ବଡ଼ କାଗଜରେ ଅଙ୍କନ କରି ରଖି-ବାକୁ ହେବ ।

୨- ଡିକ୍‌ଟେନ ଓ ଦେବେଲ ପଦ୍ଧତିରେ ଛାତ୍ରର ସ୍ୱାଧୀନ ଅଧ୍ୟୟନ, ଅଧ୍ୟବସାୟ ଓ ଆତ୍ମନିର୍ଭରଶୀଳତା ଉପରେ ଅଧିକ କାର୍ଯ୍ୟ ହୁଏ । ଶିକ୍ଷକ ଅନେକ ପରିମାଣରେ ଚାଳକ, ପଥପ୍ରଦର୍ଶକ ଓ ସାହାଯ୍ୟକାରୀର ରୂପ ଗ୍ରହଣ କରନ୍ତି । ସୁତରାଂ ସେପରି ସ୍ଥଳରେ ହାର୍ବାର୍ଟଙ୍କ ପଞ୍ଚସୋପାନ ପଦ୍ଧତିର ପ୍ରୟୋଗ ହୋଇ ପାରେ ନାହିଁ । ଛାତ୍ରମାନଙ୍କର ଆବିଷ୍କୃତ ବା ସ୍ୱୟଂ ସମାଧି-ଗତ ଜ୍ଞାନକୁ ସେ କେବଳ ମାର୍ଜିତ, ସଂସ୍କୃତ ଓ ସଜ୍ଜିତ କରିବେ ମାତ୍ର ।

୩- ଏହି ପୁସ୍ତକର ଅଷ୍ଟମ ପରିଚ୍ଛେଦରେ ଅଶୋକଙ୍କ "ଜଉଗଡ଼ ଲେଖ" ସମ୍ବନ୍ଧରେ Hultzsch ଙ୍କ ପୁସ୍ତକ ଓ ଅଶୋକଙ୍କ ଜଉଗଡ଼ ଶିଳାଲିପିର ଚିତ୍ର (facsimile) ବ୍ୟବହାର କରି କିପରି ପାଠ ଦିଆଯିବ, ତହିଁର ସୂଚନା ଦିଆ ଯାଇଅଛି । ସେହି ପାଠରେ ହାର୍ବାର୍ଟଙ୍କ ପଞ୍ଚସୋପାନ ପଦ୍ଧତିର ଆଂଶିକ

ବ୍ୟବହାର ହେଉଥିଲେ ମଧ୍ୟ ତାହାର ରୂପ ବଦଳିଯିବ । ଛାତ୍ରମାନେ ସ୍ୱୟଂଚେଷ୍ଟା ହୋଇ ଜ୍ଞାନ ଆବିଷ୍କାରରେ ଅଂଶ ଗ୍ରହଣ କରିବେ ।

୪- ଶିକ୍ଷକ 'ମୋଗଲ ଶିଳ୍ପକଳା' ସମ୍ବନ୍ଧରେ ଏକ ପାଠ ଦେବାକୁ ଚାହାନ୍ତି । ସେ ଏକ 'ସବାକ୍ ଚଳଚିତ୍ର' (ସିନେମା) ଯନ୍ତ୍ର ସାହାଯ୍ୟରେ ଏକାର୍ଯ୍ୟ ଅଧିକ ଲାଭଜନକ ଆକାରରେ ଶିକ୍ଷା ଦେଇପାରିବେ ଏବଂ ଛାତ୍ରମାନେ ସେଥିରେ ଅଧିକ ଆକୃଷ୍ଟ ହେବେ । କେବଳ ସହସ୍ର ବର୍ଣ୍ଣନାଦ୍ୱାରା ସେପ୍ରକାର ଶିକ୍ଷାଦାନ ଶିକ୍ଷକଙ୍କଦ୍ୱାରା ସାଧିତ ହୋଇପାରିବ ନାହିଁ । ପୁଣି, ପ୍ରତ୍ୟେକ ଶିକ୍ଷକଙ୍କ ଶିଳ୍ପକଳା ସମ୍ବନ୍ଧରେ ପୂର୍ଣ୍ଣ ଧାରଣା, ଅଭିଜ୍ଞତା ବା ବିଶେଷ ଜ୍ଞାନ ନ ଥାଏ ।

ଏପରି ଚଳଚ୍ଚିତ୍ର ସାହାଯ୍ୟରେ ଶିକ୍ଷା ଦେବାକୁ ଗଲେ ଛାତ୍ରଙ୍କ ମନରେ ଉଦ୍ଦେଶ୍ୟ ଅନୁକ୍ରମ ସଜାଇବାକୁ ହେବ । ପ୍ରତି ଚିତ୍ର ଦେଖାଇବା ସମୟରେ ଯନ୍ତ୍ରଟି ତାହାର ବର୍ଣ୍ଣନା କରିବ ଏବଂ ଶିକ୍ଷକ ମଧ୍ୟ ମଧ୍ୟ ଛାତ୍ରମାନଙ୍କ ସହିତ ନାନା ଆଲୋଚନା, ପ୍ରଶ୍ନୋତ୍ତର ଓ କଥୋପକଥନ ମଧ୍ୟ କରାଇବେ ।

ଯନ୍ତ୍ରର କାର୍ଯ୍ୟ ସମାପନ ପରେ ଶିକ୍ଷକ ପ୍ରାପ୍ତ ଜ୍ଞାନକୁ ଶୃଙ୍ଖଳରେ ସଜାଇ, ଛାତ୍ରମାନଙ୍କ ସାହଚର୍ଯ୍ୟ ଓ ସହଯୋଗରେ କଳାପଟାରେ ସାରାଂଶ ଲେଖିଦେବେ ।

୫- ଆଧୁନିକ "ଟେଲିଭିଜନ"ରେ ଶିକ୍ଷାବିଭାଗ ଏକ ଅଧିକ ଲାଭଜନକ ଓ ପ୍ରବୀଣ ଶିକ୍ଷାଦାନ ପଦ୍ଧତି ପ୍ରୟୋଗ କରିବାର ସୁବିଧା କରିପାରିବେ । କୌଣସି କେନ୍ଦ୍ର ବିଦ୍ୟାଳୟ ବା

ରେଡ଼ିଓଷ୍ଟେସନରୁ ଜଣେ ଅଭିଜ୍ଞ ଓ ପ୍ରବୀଣ ବ୍ୟକ୍ତି ଐତିହାସିକ ପାଠ ଦେବେ । ପ୍ରତି ସ୍କୁଲର ଛାତ୍ରମାନେ ତାଙ୍କର ସଦ୍-ବ୍ୟବହାର କରିବେ । ଶ୍ରେଣୀ ଶିକ୍ଷକ ଶ୍ରେଣୀରେ ଉପସ୍ଥିତ ଥିବେ । ଆବଶ୍ୟକ ମତେ ମଝିରେ ମଝିରେ ରେଡ଼ିଓଷ୍ଟେସନରୁ ପାଞ୍ଚମିନିଟ୍, ଦଶମିନିଟ୍ ଲେଖାଏଁ 'କଥନ' ବନ୍ଦ ରହିବ । ଏହି ପାଞ୍ଚ ଦଶ ମିନିଟ୍ ଅବସରରେ ଶ୍ରେଣୀ ଶିକ୍ଷକ ଯାହା କାର୍ଯ୍ୟ କରିବେ, ସେ ସମ୍ବନ୍ଧରେ କେନ୍ଦ୍ରରୁ ପ୍ରଥମରୁ ନିର୍ଦ୍ଦେଶ ଦିଆଥିବ । ପ୍ରତି ବିଦ୍ୟାଳୟର ଶ୍ରେଣୀଶିକ୍ଷକ ତଦନୁସାରେ କାର୍ଯ୍ୟ କରିବେ ଏବଂ ଭିନ୍ନ ଭିନ୍ନ ବିଦ୍ୟାଳୟର ବିଶେଷ ବିଶେଷ ନୂଆ ବା ସ୍ଥାନୀୟ ସମସ୍ୟା ବା ଅଭାବ ପ୍ରଶ୍ନମାନଙ୍କର ପୂରଣ ପ୍ରତି ମଧ୍ୟ ଧ୍ୟାନ ଦେବେ । ଛାତ୍ରମାନଙ୍କର ଉତ୍ଥାପିତ ସନ୍ଦେହ ପ୍ରଶ୍ନମାନଙ୍କର ମଧ୍ୟ ସମାଧାନ କରାଯିବ । ଏହି ଅବସ୍ଥାରେ ଶ୍ରେଣୀଶିକ୍ଷକ ନିଜ ଶ୍ରେଣୀର ଛାତ୍ରମାନଙ୍କର ସନ୍ଦେହ ଅଭାବ ଦୂର କରିବା ସଙ୍ଗେ ଛାତ୍ରମାନଙ୍କ ସଙ୍ଗେ ପ୍ରବୀଣ ବ୍ୟକ୍ତିଙ୍କ କଥନ ସମ୍ବନ୍ଧରେ ଆଲୋଚନା କରିବେ । କେବେ ପ୍ରବୀଣ ବ୍ୟକ୍ତି କଳାପଟାର ସାରାଂଶ ଡାକିଦେବେ ଏବଂ ଶ୍ରେଣୀଶିକ୍ଷକ ତାହା କଳାପଟାରେ ଲେଖିଦେବେ, ଛାତ୍ରମାନେ ନକଲ କରିନେବେ ।

ମୂଳରେ କହାଯିବ ଯେ ଅଧ୍ୟାପନାକୁ ସରସ ଓ ସଫଳ କରିବାକୁ ହେଲେ, ମନେ କରିବାକୁ ହେବ ଯେ ସାଧାରଣଙ୍କ ପଞ୍ଚ-ସୋପାନ ପଦ୍ଧତି ପୁରୁଣା ଓ ଅଚଳା ହୋଇ ପଡ଼ିଅଛି । ତାହାକୁ ଆଉ ଗତାନୁଗତିକ ଭାବରେ ଅନୁସରଣ କରିବାକୁ ହେବ ନାହିଁ । ଶିକ୍ଷକ ନିଜ ବସ୍ତୁର ବୁଦ୍ଧି ପ୍ରୟୋଗ କରି ତାହାର ନବୀକରଣ ଓ

ପରିବର୍ତ୍ତନ କରିବେ । ଏ କାର୍ଯ୍ୟରେ ସେ କାହାର ଏକ ନିର୍ଦ୍ଦିଷ୍ଟ ପଦ୍ଧତି ବା ପନ୍ଥା ମାନିବାକୁ ବାଧ୍ୟ ନୁହନ୍ତି । ସେ ନିଜ ପଦ୍ଧତି ନିଜେ ଆବିଷ୍କାର କରିବେ । ତାଙ୍କର ଲକ୍ଷ୍ୟ ହେବ, ଛାତ୍ରମାନଙ୍କର ସ୍ୱୟଂ-ଚେଷ୍ଟା, ସ୍ୱୟଂଶିକ୍ଷା, ସ୍ୱାଧୀନ ଅଧ୍ୟୟନ, ଅଧ୍ୟବସାୟ, ଆତ୍ମନିର୍ଭରଶୀଳତା, ବୁଦ୍ଧି ଓ କଳ୍ପନାର ଆଲୋଡ଼ନ ଏବଂ ଚରିତ୍ରର ଉତ୍କର୍ଷ ବୃଦ୍ଧି କରିବାକୁ ହେବ । ଏ କାର୍ଯ୍ୟ ନିମନ୍ତେ ଶିକ୍ଷକଙ୍କୁ କେହି ଏକ ପ୍ରଶସ୍ତ କାର୍ଯ୍ୟର ରାଜପଥ ଦେଖାଇ ଦେଇ ପାରିବେ ନାହିଁ । ଆଜି ପ୍ରତି କ୍ଷେତ୍ରରେ ଧରାବନ୍ଧା ରୀତି ବିରୁଦ୍ଧରେ ବିପ୍ଳବ ଓ ସଂସ୍କାର ଚାଲିଅଛି । ଶିକ୍ଷାଦାନ ଓ ଅଧ୍ୟାପନାରେ ମଧ୍ୟ ବିପ୍ଳବ ଓ ସଂସ୍କାର ଆକାଂକ୍ଷିତ ଓ ଅବଶ୍ୟମ୍ଭାବୀ ।

ବିଶିଷ୍ଟ ପାଠ ସମ୍ବନ୍ଧରେ ଏବଂ ବିଭିନ୍ନ ପ୍ରଣାଳୀ ସମ୍ବନ୍ଧରେ ଏହି ପୁସ୍ତକରେ କେତେକ ଆଦର୍ଶ ଓ ପରାମର୍ଶ ସ୍ଥାନେ ସ୍ଥାନେ ଦିଆଯାଇଅଛି । ମାମୁଲି ପାଠଟୀକା କପରି ଲେଖାଯିବ, ସେହି ବିଷୟରେ ଏପରି ଏକ ଆଦର୍ଶ କଥା ଆଲୋଚନା କରାଯିବ ।

ପାଠଟୀକାର ଶୀର୍ଷରେ ବା ଶିରୋଭାଗରେ ଶିକ୍ଷକ ଶ୍ରେଣୀ, ବିଷୟ, ପାଠ, ସମୟ ଓ ତାରିଖ ପ୍ରଥମେ ନୋଟ୍ କରି ରଖିବେ । ତହିଁର ତଳେ ସେ ଶିକ୍ଷାଦାନର ବ୍ୟବହାର୍ଯ୍ୟ ଉପକରଣର ମଧ୍ୟ ଏକ ଟିପ୍ପଣୀ ଲେଖି ରଖିବେ । ଏହା କଲେ ସେ ଶ୍ରେଣୀକୁ ଯିବାବେଳେ ଉପକରଣ ସଂଗ୍ରହ କରିବାରେ ଭୁଲ ହେବ ନାହିଁ ।

ପାଠଟୀକାକୁ ଗୋଟିଏ ସ୍ତମ୍ଭରେ ବିଭକ୍ତ କରିବାକୁ ହେବ, ସୋପାନ, ବିଷୟ, ପ୍ରଣାଳୀ ଓ ମନ୍ତବ୍ୟ । ଶିକ୍ଷକଙ୍କ ପାଠର ସଂକ୍ଷିପ୍ତ କଥା ଅର୍ଥାତ୍ ସେ ଛାତ୍ରମାନଙ୍କୁ ଯାହା ଶିକ୍ଷା ଦେବେ, ତହିଁର ସ୍ଥୂଳ-

କଥା ବିଷୟ ସ୍ତମ୍ଭରେ ଲେଖାଯିବ । ସେ ଯେଉଁ ଉପାୟ ଅବଲମ୍ବନ କରିବେ ବା ଯେଉଁ ପଦ୍ଧତିରେ ଶିକ୍ଷାଦାନରେ ଅଗ୍ରସର ହେବେ, ତାହାର ସୂଚନା ପ୍ରଣାଳୀ ସ୍ତମ୍ଭରେ ଲେଖାଯିବ । ବିଶେଷ କିଛି କଥା ପାଠଟୀକାରେ ସୂଚନା ଦେବାର ଆବଶ୍ୟକ ହେଲେ, ପାଠ ଦେଉଁ ଦେଉଁ ମଝିରେ କିଛି ଅଭାବ, ଅସୁବିଧା ଶିକ୍ଷକ ଅନୁଭବ କରି ପାରନ୍ତି, ତାଙ୍କର ବିଷୟବସ୍ତୁରେ ବା ପ୍ରଣାଳୀରେ କିଛି ଦୋଷ ବା ଅଭାବ ଥିବାର ସେ ଲକ୍ଷ୍ୟ କରିପାରନ୍ତି, କିମ୍ବା କୌଣସି ନୂତନ କଥା ପାଠ ଦେଉଁ ଦେଉଁ ତାଙ୍କର ମନେପଡ଼ିଲେ, ଭବିଷ୍ୟତ ଉପକାର ନିମନ୍ତେ ସେସବୁ କଥା ମନ୍ତବ୍ୟ ସ୍ତମ୍ଭରେ ଆବଶ୍ୟକମତେ ଟିପି ରଖିବେ ।

ଶିକ୍ଷକ କଳାପଟାକୁ ମନେମନେ ତିନି ଭାଗରେ ବିଭକ୍ତ କରିବେ । କଳାପଟାର ବାମପାର୍ଶ୍ୱର ଶୀର୍ଷ କୋଣରେ ଉଦ୍ଦେଶ୍ୟ ଜ୍ଞାପନ କଲାବେଳେ ପାଠର ନାମ ଲେଖିବେ । କଳାପଟାକୁ ମନେ ମନେ ତିନି ଭାଗ କରିଥିବା ପ୍ରଥମ ଭାଗରେ ମାନଚିତ୍ର, ଚିତ୍ର, ଚିହ୍ନ ପ୍ରଭୃତି ହସ୍ତ ଓ ଚକ୍ ଖଡ଼ି ସାହାଯ୍ୟରେ ଅଙ୍କନ କରିବେ । ସେହିସବୁ କାର୍ଯ୍ୟ କିଛି କରିବା ପାଇଁ ନ ଥିଲେ, କଳାପଟାକୁ ତିନି ଭାଗରେ ବିଭକ୍ତ ନ କରି, ଦୁଇ ଭାଗରେ ବିଭକ୍ତ କରାଯାଇ ପାରିବ । ଦ୍ୱିତୀୟ ଭାଗରେ ପାଠଦାନ ଚାଲୁଥିବା ବେଳେ ଯେଉଁସବୁ ଅତ୍ୟାବଶ୍ୟକ ବିଷୟ ଲେଖିଦେଲେ ଛାତ୍ରମାନଙ୍କର ଦୃଷ୍ଟି ବିଶେଷ ରୂପେ ବିଷୟ ପ୍ରତି ଆକର୍ଷଣ କରିବା ଉଚିତ, ସେସବୁ କଳାପଟାରେ କ୍ରମେ କ୍ରମେ ଲେଖୁଥିବେ । ତୃତୀୟ ବିଭାଗରେ ଧାରାବାହିକ କଳାପଟା ସାରାଂଶ ପାଠ ଶେଷରେ ଲେଖାଯିବ । ଶିକ୍ଷକ ପାଠ ଆରମ୍ଭରୁ ଯାହା କିଛି

କଳାପଟାର କାର୍ଯ୍ୟ କରିଥିବେ, ସବୁ ପାଠର ସମାପ୍ତି ପର୍ଯ୍ୟନ୍ତ କଳା-ପଟାରେ ରହିଥିବ । ଛାତ୍ରମାନେ ତାହା ସବୁ ପାଠର ଶେଷ ପର୍ଯ୍ୟନ୍ତ ଦେଖିବାକୁ ପାଉଥିବେ ଏବଂ ପାଠ ସମ୍ବନ୍ଧରେ ମନରେ ଓ କଳ୍ପନା ଚକ୍ଷୁରେ ପୂର୍ଣ୍ଣ ଧାରଣା କରିବାକୁ ସୁଯୋଗ ପାଇବେ । ସେମାନଙ୍କର କଳାପଟାରୁ ଯେତିକି ଅଂଶ ଟିପି ରଖିବା ଦରକାର, ସେତିକ ନିଜ ନୋଟ୍ ଖାତାରେ ମଝିରେ ମଝିରେ ଟିପି ରଖୁଥିବେ । କଳାପଟାର କାର୍ଯ୍ୟରୁ ପ୍ରତ୍ୟେକ ବିଷୟ ଛାତ୍ରମାନଙ୍କର ଟିପି ରଖିବା ଆବଶ୍ୟକ ନୁହେଁ । କେଉଁ ଅଂଶ ଟିପାଯିବ ଏବଂ କେଉଁ ଅଂଶ ଟିପାଯିବ ନାହିଁ, ସେବିଷୟରେ ଶିକ୍ଷକ ଛାତ୍ରମାନଙ୍କୁ କ୍ରମେ ଅଭ୍ୟସ୍ତ କରାଇବେ ଏବଂ ଅନ୍ତ କେତେକ ଦିନର ଅଭ୍ୟାସ ପରେ, ଏକାର୍ଯ୍ୟ ଛାତ୍ରମାନେ ନିଜ ଚେଷ୍ଟା ଓ ବୁଦ୍ଧିବଳରେ କରିପାରିବେ ।

ଛାତ୍ରମାନେ ଶ୍ରେଣୀକୋଠରିର ଯେଉଁ ଦିଗକୁ ମୁହଁ କରି ବସିଥିବେ, ସେହି ଦିଗର କାନ୍ଥର ସମ୍ପୂର୍ଣ୍ଣ ଦୈର୍ଘ୍ୟ ପରିମାଣରେ କଳାପଟା ସିମେଣ୍ଟଦ୍ୱାରା ନିର୍ମିତ ହେବ, ଯେପରି ଶିକ୍ଷକଙ୍କ ୪୫ ମିନିଟ୍ ପିରିଅଡ଼ର ସମଗ୍ର କଳାପଟାକାର୍ଯ୍ୟ ସେଥିରେ ରହିପାରିବ ଏବଂ ଶିକ୍ଷକଙ୍କୁ ବାରମ୍ବାର କଳାପଟା ଲିଭାଇବାକୁ ପଡ଼ିବ ନାହିଁ । କଳାପଟା ଛଡ଼ା ଗ୍ଲୋବ, ମାନଚିତ୍ର, ଚାର୍ଟ, ଛବି ପ୍ରଭୃତି ଝୁଲାଇବା ନିମନ୍ତେ ମଧ୍ୟ ଶ୍ରେଣୀକୋଠରିରେ ବନ୍ଦୋବସ୍ତ କରାଯିବ ।

ଏହା ବାହାରେ ପାଠପ୍ରସ୍ତୁତି, କାର୍ଯ୍ୟତଃ ପାଠଦାନ ଓ ଶ୍ରେଣୀ ପରିଚାଳନା ସମ୍ବନ୍ଧରେ ଆଉ ଯାହାକିଛି ଜାଣିବା ଆବଶ୍ୟକ, ପରବର୍ତ୍ତୀ କେତେକ ପୃଷ୍ଠାରେ ଦିଆ ଯାଇଥିବା ଆଦର୍ଶ ପାଠଟୀକା-ମାନଙ୍କରୁ ଶିକ୍ଷକ ସଂଗ୍ରହ କରନେବେ ।

---

— ଚାର —

# ଆଦର୍ଶ ପାଠଖସଡ଼ା (ସ୍କିମ) ଓ ପାଠଟୀକା

**ପାଠଖସଡ଼ା**—ଶ୍ରେଣୀର ଶିକ୍ଷାଦାନ ନିମନ୍ତେ ଯଦି ଶିକ୍ଷକ ବାର୍ଷିକ ପାଠଖସଡ଼ା (scheme) ପ୍ରସ୍ତୁତ ନ କରନ୍ତି, ତେବେ ସେ ଭଲ ରୂପେ ନିଜ କାର୍ଯ୍ୟ ସମ୍ପାଦନ କରିପାରିବେ ନାହିଁ । ବର୍ଷ ଶେଷରେ ଦେଖିବା ବେଳକୁ ତାଙ୍କ ପାଠ ଯେତେ ଅଗ୍ରସର ହେବା ଉଚିତ, ସେଥିରୁ ଊଣା ବା ଅଧିକ ହୋଇ ଯାଇଥିବ । ମଝିରେ କେତୋଟି ପାଠ ଛାଡ଼ି ଯାଇଥିବେ । ଯେଉଁ ପାଠର ଯେତେ ଗୁରୁତ୍ୱ ରହିବା କଥା, ତାହା ଦେଇ ନ ଥିବେ । ପାଠ ମଧ୍ୟରୁ କାହିଁ କାହିଁ ଅଂଶବିଶେଷମାନ ଛାଡ଼ି ଯାଇଥିବେ । ଅନ୍ୟ ବିଷୟ ବା ପାଠ ସଙ୍ଗେ ଯେଉଁ ସମ୍ପର୍କ ବା ସମନ୍ୱୟ (correlation) ରହିବା ଦରକାର ଏବଂ ଯାହା ରଖିଥିଲେ, ସେ ପାଠଟି ଅଧିକ ଭଲ ରୂପେ ପଢ଼ାଇ ପାରିଥାନ୍ତେ, ତାହା ହୁଏତ ରଖି ନ ଥିବେ ।

ପାଠଖସଡ଼ା ପ୍ରସ୍ତୁତ କରିବା ନିମନ୍ତେ ଶିକ୍ଷକ ସିଲବସ୍, ଶ୍ରେଣୀର ନିର୍ଦ୍ଦିଷ୍ଟ ପାଠ୍ୟପୁସ୍ତକ ଏବଂ ଆବଶ୍ୟକ ପରାମର୍ଶ ପୁସ୍ତକ-ମାନ ଭଲ ରୂପେ ଆଲୋଚନା ଓ ଚିନ୍ତା କରିବେ । ନବମ, ଦଶମ ଓ ଏକାଦଶ ଶ୍ରେଣୀ ନିମନ୍ତେ ଗୋଟିଏ ସିଲବସ ଅଛି । ସୁତରାଂ, ଏହି ସିଲବସକୁ ତିନି ଭାଗରେ ପ୍ରଥମେ ବିଭକ୍ତ କରିବାକୁ ହେବ । ନବମ ଶ୍ରେଣୀ ସକାଶେ ସ୍ୱାଧୀନ ଭାରତର ଇତିହାସ ଅର୍ଥାତ୍ ମୋଗଲ ସମୟରୁ ଯୁଦ୍ଧ ପର୍ଯ୍ୟନ୍ତ ବିବରଣ, ଦଶମ ଶ୍ରେଣୀ ସକାଶେ ମୁସଲମାନ ରାଜତ୍ୱର ଇତିହାସ ଅର୍ଥାତ୍ ପଲାସି ଯୁଦ୍ଧଠାରୁ ଭୁରାଳୁ ପାନିପଥ ଯୁଦ୍ଧ ପର୍ଯ୍ୟନ୍ତ ବିବରଣ ଏବଂ ଏକାଦଶ ଶ୍ରେଣୀ ସକାଶେ ଅବଶିଷ୍ଟ ଇତିହାସ ରଖିଲେ, ପାଠ୍ୟନିର୍ଘଣ୍ଟ ଶେଷ କରିବାକୁ ସୁବିଧା ହେବ ।

ସ୍କୁଲର କ୍ୟାଲେଣ୍ଡର ଦେଖି ଛୁଟିଦିନମାନ ଏବଂ ରବିବାରମାନ ତଥା ପରୀକ୍ଷାଦିନମାନ କିଂବା ସେପ୍ରକାର ଶ୍ରେଣୀକାର୍ଯ୍ୟ ହୋଇ ନ ପାରିବା ଦିନମାନ ଶିକ୍ଷକ ଆଗରୁ ଅବଧାରଣ କରିନେବେ । ଏହା କରିସାରିବା ପରେ ସିଲବସରେ କେତୋଟି ପାଠ ଅଛି, ପ୍ରତି ମାସରେ କେତୋଟି ଦିନ ମିଳିବ ଏବଂ କେତୋଟି ପାଠ ପୁନରାବୃତ୍ତି ନିମନ୍ତେ ଆବଶ୍ୟକ, ସବୁ ଠିକ୍ କରିନେବେ । ତା'ପରେ ମାସରେ ମିଳୁଥିବା ଦିନ ଅନୁସାରେ ପାଠର ସଂଖ୍ୟା ଗଣି ଅନୁ-କ୍ରମରେ ପାଠମାନ ନିର୍ଦ୍ଦିଷ୍ଟ କରି ରଖିବେ । ପ୍ରତି ପରିଚ୍ଛେଦର ଶେଷରେ ଗୋଟିଏ ପୁନଃ ଆଲୋଚନା ଓ ପୁନରାବୃତ୍ତି ପାଠ ରଖିବା ନିତାନ୍ତ ଆବଶ୍ୟକ । ଏହା ନ କରିଲେ, ଛାତ୍ରମାନେ ଶିକ୍ଷକଙ୍କ କାର୍ଯ୍ୟକୁ ଧରିପାରୁଛନ୍ତି କି ନାହିଁ, ଘରେ ଆବୃତ୍ତି କରୁଛନ୍ତି କି ନାହିଁ,

ଶିକ୍ଷାକୁ କାର୍ଯ୍ୟ ଓ କର୍ମମୂଳକ ପ୍ରୟୋଗରେ ଲଗାଉନ୍ତୁନ୍ତି କି ନାହିଁ, ଇତ୍ୟାଦି କଥା ଶିକ୍ଷକ ଜାଣିପାରିବେ ନାହିଁ । ଏହା ଛଡ଼ା ମଝିରେ ମଝିରେ ଏପ୍ରକାର ପୁନରାବୃତ୍ତି ହେଉଥିଲେ, ଅଗ୍ରଗତ ପଠିତାଂଶ ଛାତ୍ରମାନଙ୍କର ମନେ ରହିବ ଏବଂ ସେମାନେ ପଠନରେ ଅଧିକ ମନୋନିବେଶ କରିବାକୁ ଆଗ୍ରହୀ ଓ ଯତ୍ନଶୀଳ ହେବେ ।

ପାଠବିଭାଗ—ଏହି ପୁସ୍ତକର ତୃତୀୟ ପରିଚ୍ଛେଦରେ ନବମ ଶ୍ରେଣୀର ପାଠ୍ୟ ରୂପେ ଦିଆ ଯାଇଥିବା ହିନ୍ଦୁରାଜତ୍ୱ କାଳର ବିଷୟସବୁ ଆଲୋଚ୍ୟ ଆଦର୍ଶ ରୂପେ ଧରିନେବା ।

ଜୁନ ମାସରେ ସ୍କୁଲ ଖୋଲିବ, ସେପ୍ଟେମ୍ବର ମାସରେ ପୂଜା ଛୁଟି ଏବଂ ଏପ୍ରିଲ ମାସରେ ନାନାପ୍ରକାର ପରୀକ୍ଷା ଯୋଗୁଁ ଶ୍ରେଣୀର କାର୍ଯ୍ୟ ହୋଇ ପାରିବ ନାହିଁ । ସମ୍ଭବତଃ ଶିକ୍ଷକ ନିମ୍ନ ପ୍ରକାରରେ ମୋଟାମୋଟି ପିରିଅଡ (ଘଣ୍ଟା) ଶିକ୍ଷାଦାନ ନିମନ୍ତେ ବର୍ଷରେ ପାଇବେ ।

ଜୁଲାଇ—୮ ଟି, ଅଗଷ୍ଟ—୮, ସେପ୍ଟେମ୍ବର—୪, ଅକ୍ଟୋବର—୮, ନଭେମ୍ବର—୮, ଡିସେମ୍ବର—୪, (ପରୀକ୍ଷା ଓ ଛୁଟି), ଜାନୁଏରି—୮, ଫେବ୍ରୁଏରି—୬, ମାର୍ଚ୍ଚ—୮, ମୋଟ—୬୨—୨ (?)=୬୦ । ଅପ୍ରତ୍ୟାଶିତ କାରଣ ପାଇଁ ୨ଟା ପିରିଅଡ଼ ରଖାଯାଇଛି । ନିର୍ଘଣ୍ଟରେ ସମଗ୍ର ପାଠ୍ୟକୁ ଛଅ ବିଭାଗ କରାଯାଇଛି । ପ୍ରଥମ ଓ ଷଷ୍ଠ ବିଭାଗ ଆକାର ଓ ଦୈର୍ଘ୍ୟରେ ଅପେକ୍ଷାକୃତ କ୍ଷୁଦ୍ରତର ଅଛି । କେଉଁଠି କେମିତି ଶିକ୍ଷକ ଅପ୍ରତ୍ୟାଶିତ କାରଣବଶତଃ

ଗୋଟିଏ ମାସର କାର୍ଯ୍ୟ ସେହି ମାସରେ ଶେଷ କରି ପାରିବେ ନାହିଁ ବୋଲି ମିଳୁଥିବା ୬୦ ଗୋଟି ପିରିଅଡ୍‌କୁ ସମାନ ଦୁଇ ଭାଗ କରି ପ୍ରତି ବିଭାଗ ପାଇଁ ହାରାହାରି ୧୦ ପିରିଅଡ୍ ଧରାଯାଉଛି । ୧୦ ପିରିଅଡ୍ ମଧ୍ୟରୁ ୮ ଟିରେ ବା ୯ ଟିରେ ମୌଳିକ ପାଠ ଦେବେ ଏବଂ ଗୋଟିଏ ବା ଦୁଇଟିରେ ଆବୃତ୍ତି ପାଠ ଦେବେ । ଆଦର୍ଶ ସ୍କିମର ସୂଚନା ଦେଖାଇବା ନିମନ୍ତେ ଏଠାରେ ୪ର୍ଥ ବର୍ଗର ପାଠମାନ ପୃଥକ୍ ରୂପେ ନିର୍ଦ୍ଦେଶ କରି ଦିଆ ଯାଉଅଛି ।

ସ୍କିମରେ ଅନ୍ୟ ବିଷୟ ବା ପାଠରୁ ସମ୍ପର୍କ ମଧ୍ୟ ଅଙ୍କିତ ହେବ । ତା' ହେଲେ ଶିକ୍ଷକ ପାଠ ଦେବାକୁ ଯିବା ବେଳେ ସେହି ସମ୍ପର୍କ (correlation) ଦେଖାଇବା କଥା ଭୁଲିଯିବେ ନାହିଁ । ଏହା ଛଡ଼ା ସ୍କିମରେ ପରାମର୍ଶ ପୁସ୍ତକର (reference books) ତାଲିକା ମଧ୍ୟ ହେବ ।

ନିର୍ଦ୍ଦେଶିତ ଦଶଟି ପାଠ ଜାନୁଏରି ଓ ଫେବୃଏରି ମାସରେ ପଢ଼ିବ । ଶିକ୍ଷକ ଜାନୁଏରି ମାସରେ ମିଳୁଥିବା ୮ ପିରିଅଡ୍ ଓ ଫେବୃଏରି ମାସରେ ୨ ପିରିଅଡ୍ ଏଥି କାର୍ଯ୍ୟରେ ବିନିଯୋଗ କରିବେ ।

ବାର୍ଷିକ ସ୍କିମରେ ମାସମାନଙ୍କର ନାମ ଏବଂ କ୍ରମିକ ପାଠ ସଂଖ୍ୟା ଓ ପାଠତାଲିକା ପରିଷ୍କାର ଭାବରେ ସୂଚିତ ହେବ । ଏଠାରେ ସୂଚନା ନିମନ୍ତେ କେବଳ ଦୁଇ ମାସର ଆଦର୍ଶ ଦେଖାଇ ଦିଆଯାଉଛି ।

| ମାସ | ପାଠ | ସମନ୍ୱୟ ଶିକ୍ଷା | ପରାମର୍ଶ ପୁସ୍ତକ |
|---|---|---|---|
| ଜାନୁଏରି- (୮ ପିରି- ଅଡ଼) | ୧. ଖ୍ରୀ:ପୂ: ଷଷ୍ଠ ଶତାବ୍ଦୀ ଓ ତତ୍‌ପୂର୍ବେ ଭାରତ (ଭାରତର ବୈଦିକ ଯୁଗ ଓ ବୌଦ୍ଧଯୁଗର ଗଣତନ୍ତ୍ର ଓ ରାଜତନ୍ତ୍ର—ଶିବ, ଯୌଧେୟ, ମାଳବକ, ଲିଚ୍ଛବି, ବୈଶାଳୀ ପ୍ରଭୃତି) | ଗ୍ରୀସ ଓ ରୋମର ଗଣତନ୍ତ୍ର ରାଜ୍ୟ— ଓ ତୁଳନା | An Advanced History of India. Mazumdar, Raychaudhuri and Dutta. Outlines of World History— H.G.Wells. |
| | ୨. ଶୈଶୁନାଗ, ହର୍ଯ୍ୟଙ୍କ ଓ ନନ୍ଦବଂଶ— (ମଗଧର ଅଭ୍ୟୁତ୍‌ଥାନ) | କାଇରସ, ଡେରିୟସ, ଜ୍ୱାଏର୍କ୍ସେସ, ଜାର୍କସିସ, ଆଲେକଜାଣ୍ଡାର ଓ ସିଲ୍ୟୁକସ | Outlines of World History —H.G.Wells. |
| | ୩. ଡେରିୟସ ଓ ଆଲେକ୍‌ଜାଣ୍ଡାରଙ୍କ ଭାରତ ଆକ୍ରମଣ (ପଞ୍ଜାବ) | ଭାରତର ନନ୍ଦବଂଶ | Outlines of World History —H.G. Wells. |

| | | |
|---|---|---|
| ୪-୫. ଚନ୍ଦ୍ରଗୁପ୍ତ- ରାଜ୍ୟସ୍ଥାପନ ଓ ଶାସନ: ରାଜଧାନୀ-ସେନା-ରାଜସ୍ୱ- ଦଣ୍ଡବିଧି | ଗ୍ରୀକ୍-ମେଗାସ୍ଥିନିସ, ଡାଏଡୋରସ ସିକୁଲସ, ଷ୍ଟ୍ରାବୋ, ଆରିଆନ,— ରୋମର ଏମ୍ପିଥିଏଟର, | Ancient India as described by Megasthenes and Arrian-M'Crindle, and other Greek Accounts. |
| | A History of Orissa —R.D. Banerji. | |
| ୬-୭. ଅଶୋକ — କଳିଙ୍ଗଯୁଦ୍ଧ, ବୌଦ୍ଧଧର୍ମ, ଧର୍ମପ୍ରଚାର, ଧର୍ମବିଜୟ | ଭାରତରେ ରଙ୍ଗମଞ୍ଚ ଓ ନୃତ୍ୟ- ସାହିତ୍ୟ, ବଜ୍ରମଖୋଲ ଓ ଯୋଗୀମଣ୍ଡା ( ପି. ପି. )। | Outlines of World History —H.G. Wells |
| | Inscriptions of Asok -Hultzsch, and Benimadhav Barua. | |
| ୮. ମୌର୍ଯ୍ୟଙ୍କଦ୍ୱାରା ପୃଥିବୀର ସଭ୍ୟତା ଓ ସଂସ୍କୃତିର ବିକାଶ ଓ ପରିବର୍ତ୍ତନ। | Kalinga Historical Societys' Journal. Mahakosal Historical Society's Journal. Bihar and Orissa Research Society's Journal. | |

| | | | |
|---|---|---|---|
| ଫେବୃଆରି-୯. | ଖାରବେଳ | କଳିଙ୍ଗ ଓ ତାମିଳ ଦେଶର ଫାରେସମୁଦ୍ର ବାଣିଜ୍ୟ, ଉପନିବେଶ, ସଭ୍ୟତା ଓ ସଂସ୍କୃତି, ଧର୍ମପ୍ରଚାର । ଓଣିକେଲେଡ଼ ସାମ୍ରାଜ୍ୟ —ଫାଣ୍ଡ୍ୟମାନଙ୍କ ପ୍ରତ୍ୟାବର୍ତ୍ତନ ହଥ । | A History of Orissa-R.D. Banerji. Kharavela—K.N. Mahapatra. A History of Indian Shipping and Maritime Activity-Radhakumud Mookerji. Glories of Ancient Orissa—S.P. Das. History of Sambalpur —S.P. Das. |
| ୧୦ | (ଧ୍ୱନିବକ୍ତୃତିପାଠ)— ମଗଧ ସାମ୍ରାଜ୍ୟର ଅଭ୍ୟୁତ୍ଥାନ ଓ ଉନ୍ନତି (ସଂଗଠନପାଠ) | | |

ଏହା ପରେ ଶିକ୍ଷକଙ୍କ ଆଦର୍ଶ ନିମନ୍ତେ କେତେକ ପାଠ-ଟୀକା ଏଠାରେ ଦିଆ ଯାଉଅଛି । ତନ୍ମଧ୍ୟରୁ କେତେକ ମୌଳିକ ପାଠ ଓ କେତେକ ଆବୃତ୍ତି ବା ସଂଗଠନ (organisation) ପାଠ । ଶିକ୍ଷକ ଏହି ପାଠମାନଙ୍କୁ ନିଜ ଇଚ୍ଛା ମତେ ପରିବର୍ତ୍ତନ, ପରିବର୍ଦ୍ଧନ ବା ପରିକର୍ତ୍ତନ କରିବେ । ଗୋଟିଏ ପାଠକୁ ଏକାଧିକ ପାଠରେ ପରିଣତ କରିପାରିବେ । ସାଧାରଣ ଦୈନନ୍ଦିନ କାର୍ଯ୍ୟ କଲା ବେଳେ ତାଙ୍କର ଯେପ୍ରକାର ପାଠ ଦେବା କଥା ଏହି ପାଠଟୀକାମାନ-ଙ୍କରେ ସୂଚନା ଦିଆ ଯାଇଅଛି । ବିଶେଷପ୍ରକାର ପାଠ ସକାଶେ ତାଙ୍କୁ ପୂର୍ବବର୍ତ୍ତୀ ଅଧ୍ୟାୟମାନ ପଢ଼ି ଓ ଚିନ୍ତା କରି ପାଠଟୀକା ପ୍ରସ୍ତୁତ କରିବା ଦରକାର ପଡ଼ିବ ।

ପ୍ରତିଦିନ ଓ ପ୍ରତି ଘଣ୍ଟା ପାଇଁ ଏପ୍ରକାର ପାଠଟୀକା ଲେଖିବା ଶିକ୍ଷକଙ୍କ ପକ୍ଷରେ ସମ୍ଭବ ନୁହେଁ, କାରଣ ତାଙ୍କୁ ଦିନକର କାର୍ଯ୍ୟ ଭିତରେ ୫।୬ ଘଣ୍ଟା କାମ କରିବାକୁ ହେବ ଏବଂ ୫।୬ଟା ପାଠଟୀକା ଲେଖିବାକୁ ହେବ । ସୁତରାଂ, ସେ ଯେ କିଛି ନ କରି ଶ୍ରେଣୀକୁ ଯିବେ, ତା ନୁହେଁ । ତାଙ୍କୁ ପ୍ରତିଦିନ ଆଗରୁ ସ୍ଥିର କରିବାକୁ ହେବ, କେଉଁ ଶ୍ରେଣୀରେ କି କାର୍ଯ୍ୟ କରିବେ । କି କି ପରାମର୍ଶ ପୁସ୍ତକ ଦେଖିବେ । ବିଷୟବସ୍ତୁ ଭଲ ରୂପେ ଅଧ୍ୟୟନ କରିବେ । ପ୍ରଣାଳୀ ଭାବି ନେବେ । ଏହା ଦ୍ୱାରାରେ କାର୍ଯ୍ୟକ୍ଷେତ୍ରରେ ସ୍ମରଣ ହେବା ଓ ଅସୁବିଧା ସ୍ଥଳରେ ଶୀଘ୍ର ଜାଣିବା ସକାଶେ ସେ ନିଜ ଦୈନନ୍ଦିନ ଟୀକାଖାତାରେ ଖୁବ ସଂକ୍ଷେପରେ ଆବଶ୍ୟକ କେତେକ ଟିପ୍ପଣୀ ରଖିବେ । ପଡ଼ଉଠକିଆ ଫୁଲ୍‌ସ୍‌କେପ ଆକାରରେ ଗୋଟିଏ ପୃଷ୍ଠାରେ ତାଙ୍କର ଦିନକର ଟିପ୍ପଣୀ ରହି ପାରିବ । ଦିନକର କାର୍ଯ୍ୟର ଆଦର୍ଶ ଟିପ୍ପଣୀ ନିମ୍ନମତେ ହୋଇପାରିବ ।

# ଦୈନିକ ପାଠଟୀକା

ତା ୨ । ୮ । ୫୭

୧ମ ପିରିଅଡ୍—ଦଶମ ଶ୍ରେଣୀ—ଶିବାଜୀଙ୍କ ହିନ୍ଦୁରାଜ୍ୟ ସ୍ଥାପନ:

ହିନ୍ଦୁ ସଂସ୍କାରକ ଓ ଜାତୀୟ ଆନ୍ଦୋଳନ—ମହାରାଷ୍ଟ୍ର ଓ ଭୌଗୋଳିକ ପରିସ୍ଥିତି—ଶିବାଜୀ ଓ ରାମଦାସ—ମାବଲେ ସେନା ।

ଆଫଜଲ୍‌ହତ୍ୟା—ଶାୟିସ୍ତା, ଜୟସିଂହ ଓ ଯଶୋବନ୍ତ—ଅଭିଷେକ ।

ରାଜ୍ୟସୀମା— ୪୦୦ ମା × ୧୨୦ ମା

ସାତପୁର > ୨ତୁଙ୍ଗଭଦ୍ରା
ସୋନଗଙ୍ଗା > ୨ଆରବସମୁଦ୍ର ।

୧୬୨୭ —ଜନ୍ମ

୧୬୪୮ —ବିଜାପୁର ଲୁଣ୍ଠନ

୧୬୬୨ — ପୁନା ଦ୍ୱିତି ଆକ୍ରମଣ

୧୬୬୮ —ମୋଗଲର ସ୍ୱାଧୀନତା ସ୍ୱୀକାର

୧୬୭୨ —ଅଭିଷେକ

୧୬୮୦ —ମୃତ୍ୟୁ

୨ୟ ପିରିଅଡ୍—

ଏକାଦଶ ଶ୍ରେଣୀ—ଟୋଡ଼ରମଲ୍ଲଙ୍କ

ରାଜସ୍ୱବନ୍ଦୋବସ୍ତ:

ଶେରସାହଙ୍କ ହିନ୍ଦୁ ମନ୍ତ୍ରୀ ଅଯୋଧ୍ୟାର ଟୋଡ଼ରମଲ୍ଲ ।

ଜମିବିଭାଗ—ଜରିବ—ଉତ୍ପନ୍ନର ⅓—ନଗଦମୁଦ୍ରା ବା ଶସ୍ୟ ।

ଅମିଲ ( ଅମାଲଗୁଜାର )—ଜିଲ୍ଲାର ରାଜସ୍ୱ ସଂଗ୍ରାହକ ।

କାନନଗୋ—ରାଜସ୍ୱ ହିସାବ ରକ୍ଷକ ।

ପୋତଦାର—ଖାଜାଞ୍ଚି । ବିଟିକଚି—ସମୀକ୍ଷକ ।

ମକଦମ୍ ଓ ପଟୁଆରି—ଗ୍ରାମୀୟ ସଂଗ୍ରାହକ ।

ରୟତବାରି—ମଧ୍ୟସ୍ଥ ନାହିଁ—ପଟ୍ଟା ଓ କବୁଲିୟତ୍ ।

୩ୟ ଓ ୪ର୍ଥ ପିରିଅଡ୍—ଇଂରାଜୀ ।

୫ମ ପିରିଅଡ୍— ଟିଫିନ୍ ।

୬ଷ୍ଠ ପିରିଅଡ୍— ନବମ ଶ୍ରେଣୀ—

| | |
|---|---|
| ଖ୍ରୀ: ପୂ: ୩୨୪ | —ମଗଧ |
| ଖ୍ରୀ: ପୂ: ୩୨୧ | —ପଞ୍ଜାବ |
| ଖ୍ରୀ: ପୂ: ୩୦୫ | —ସିଲିଉକସ ପରାସ୍ତ |

ଚନ୍ଦ୍ରଗୁପ୍ତ ମୌର୍ଯ୍ୟ—(୧) ମଗଧ, (୨) ପଞ୍ଜାବ,
(୩) ସିନ୍ଧୁନଦୀକପଥଗସ୍ଥ,
(୪) ଦାକ୍ଷିଣାତ୍ୟ (?) ।

ବାଜ୍ୟ-ହିମାଳୟ > < ଚପଉଣାର
ହିନ୍ଦୁକୁଶ > < ବ୍ରହ୍ମପୁତ୍ର ।

ପାଟଳୀପୁତ୍ର ମ୍ୟୁନସିପାଲିଟି—ଛଅ ସମିତି—
(୧) ଶିଳ୍ପୀ, (୨) ବିଦେଶୀ, (୩) ଜନ୍ମମୃତ୍ୟୁ (୪) ପଣ୍ୟ,
(୫) ବହଦ୍ବାଣିଜ୍ୟ, (୬) ଶୁଳ୍କ ।

ସେନା—ଛଅସମିତି—(୧) ରଥ ସମିତି, (୨) ଗଜସମିତି,
(୨) ଅଶ୍ୱସମିତି, (୩) ପଦାତିସମିତି,
(୫) ନୌସମିତି, (୫) ସେନାପରିବାହ-
ସମିତି,

ରଥ—୮,୦୦୦
ଗଜ—୯,୦୦୦
ଅଶ୍ୱ—୩୦,୦୦୦
ପଦାତି—୬୦୦,୦୦୦

୨୮ ଟିପ୍ପଣୀ—ଲିଙ୍କର ।

ଶ୍ରେଣୀ — ଷଷ୍ଠ
ସମୟ — ୪୫ ମିନିଟ୍
ବିଷୟ — ଇତିହାସ : ଶିବାଜୀ
ପାଠ — ହିନ୍ଦୁ ରାଜ୍ୟସ୍ଥାପନ (ମୌଳିକପାଠ)
ଉପକରଣ — ଶାହଜାହାନଙ୍କ ରାଜତ୍ୱରେ ଭାରତର ରାଜନୈତିକ ଅବସ୍ଥା ଦେଖାଉଥିବା ଐତିହାସିକ ମାନଚିତ୍ର ।

| ସୋପାନ | ବିଷୟବସ୍ତୁ | ପ୍ରଣାଳୀ | ମନ୍ତବ୍ୟ |
|---|---|---|---|
| ଉପକ୍ରମ — ପୂର୍ବଜ୍ଞାନ ସହିତ ସମନ୍ୱୟ ସ୍ଥାପନ ଓ ମନୋଯୋଗ ଆକର୍ଷଣ | ମୁସଲମାନ ରାଜତ୍ୱରେ ହିନ୍ଦୁମାନଙ୍କର ସାମୂହିକ କ୍ଷତି, ଓ ତହିଁର ପ୍ରତିକ୍ରିୟା ଚେଷ୍ଟା | ଶିକ୍ଷକ ମୁସଲମାନ ରାଜତ୍ୱକାଳରେ ହିନ୍ଦୁମାନଙ୍କର ଦୁର୍ଗତିର କେତେକ ଦୃଷ୍ଟାନ୍ତ ଛାତ୍ରମାନଙ୍କ ମନରେ ଉଦ୍ଦୀପନ କରାଇବେ ।<br>ପ୍ରଶ୍ନ-୧. ମୁସଲମାନ ରାଜତ୍ୱରେ କି କି ଉପାୟରେ ହିନ୍ଦୁମାନଙ୍କୁ ଇସଲାମ | |

୧. ବଲକ୍କାର ଧର୍ମଦୀକ୍ଷା

୨. ମନ୍ଦିରଧ୍ୱଂସ

୩. ଜିଜିଆ ଇତ୍ୟାଦି

ଧର୍ମରେ ଦୀକ୍ଷିତ କରା ଯାଉଥିଲା ?

୨. ଆଲ୍ଲାଉଦ୍ଦିନ ଖିଲଜି ହିନ୍ଦୁମାନଙ୍କ ଉପରେ କି କି ଅତ୍ୟାଚାର କରୁଥିଲେ ?

୩. ଏପ୍ରକାର ଅତ୍ୟାଚାରରେ ହିନ୍ଦୁ-ମାନଙ୍କ ମନରେ କି ପ୍ରକାର ଜାତୀୟ ପ୍ରତିକ୍ରିୟା ଓ ଜାଗରଣ ଆସିଥିବ ?

ଧର୍ମସଂସ୍କାର ଓ ରାଜନୈତିକ ବିପ୍ଳବ

ଏକନାଥ, ତୁକାରାମ, ରାମଦାସ ଓ ପଣ୍ଡିତ ଧର୍ମସଂସ୍କାରକଗଣ ମହା-ରାଷ୍ଟ୍ରରେ ଏକେଶ୍ୱରବାଦ ଓ ସାମା-ଜିକ ସାମ୍ୟବାଦ ପ୍ରଚାର କରି କପରି ଜାତୀୟ ଏକତା ଓ ଜାଗରଣ ଆଣିଲେ, ଶିକ୍ଷକ ଛାତ୍ରମାନଙ୍କୁ ବୁଝାଇଦେବେ । ଆନ୍ଦୋଳନ ହିନ୍ଦୁ ଜାତି ଓ ହିନ୍ଦୁଧର୍ମର ରକ୍ଷା ନିମନ୍ତେ କ୍ରମେ ରାଜନୈତିକ ଆକାର ଧାରଣ

| | | |
|---|---|---|
| | | କଲ ଏବଂ ଶିବାଜୀ ସେହି ସୁଯୋଗରେ ନେତା ହୋଇ କପରି ହିନ୍ଦୁ ରାଜ୍ୟ ସ୍ଥାପନ କଲେ ତତ୍ପ୍ରତି ଛାତ୍ରମାନଙ୍କର ଦୃଷ୍ଟି ଆକର୍ଷଣ କରିବେ । |
| **ଉଦ୍ଦେଶ୍ୟଜ୍ଞାପନ** | "ଶିବାଜୀଙ୍କ ହିନ୍ଦୁରାଜ୍ୟ ସ୍ଥାପନ" | ଶିକ୍ଷକ ନିଜ ଉଦ୍ଦେଶ୍ୟ ଜ୍ଞାପନ କରି କହିବେ, ଆଜି "ଶିବାଜୀଙ୍କର ହିନ୍ଦୁ-ରାଜ୍ୟ ସ୍ଥାପନ" କଥା ଆଲୋଚନା କରିବା ଏବଂ କଳାପଟାରେ ପାଠର ନାମ ଲେଖିଦେବେ । |
| **କ୍ଷେତ୍ରପ୍ରସ୍ତୁତ** | (କ) ଶାହଜାହାନଙ୍କ ଅମଳରେ ରାଜନୈତିକ ଅବସ୍ଥା :- | ଶାହଜାହାନଙ୍କ ଅମଳରେ ଭାରତର ଐତିହାସିକ ମାନଚିତ୍ର ଶିକ୍ଷକ ଛାତ୍ର-ମାନଙ୍କୁ ଦେଖାଇବେ । ନିଜେ କଳା-ପଟାରେ ଏକ ସୀମାମାନଚିତ୍ର ଅଙ୍କନ କରି ସେଥିରେ ମୋଗଲ ସାମ୍ରାଜ୍ୟର |

(ଖ) ମହାରାଷ୍ଟ୍ର :-

ସୀମା - ଉ: ବିନ୍ଧ୍ୟ ଓ ସାତପୁରା
ପ: ସହ୍ୟାଦ୍ରି ।

ନଦୀ—ନର୍ମଦା ଓ ତାପ୍ତୀ, ଘନ ଅରଣ୍ୟ ଓ ପର୍ବତ, ଶସ୍ୟ ଓ ଜଳର ଅଭାବ, ଦୁଷ୍ପ୍ରବେଶ୍ୟତା-ଦୁର୍ଗବହୁଳତା ।

ଅଧିବାସୀ — କଷ୍ଟସହିଷ୍ଣୁ, କର୍ମଠ, ସାହସୀ । ମରହଟ୍ଟୀ ଭାଷା ଯୋଗେ ଏକତା ।

ସୀମା, ବିଜାପୁର ଓ ଗୋଲକୋଣ୍ଡା ରାଜ୍ୟମାନ ଦେଖାଇବେ । ମୋଗଲ ସାମ୍ରାଜ୍ୟର ସୀମା ଭିତରେ ଆହମ୍ମଦନଗର ରାଜ୍ୟର ପ୍ରାଚୀନ ଅବସ୍ଥାନ ଆଙ୍କିଦେବେ । ଛାତ୍ରମାନେ ମଧ୍ୟ ନିଜ ନିଜ ନୋଟ୍‌ଖାତାରେ ସେହି ମାନଚିତ୍ର ଆଙ୍କିବେ ।

ଶିକ୍ଷକ ସୀମାମାନଚିତ୍ରରେ ମହାରାଷ୍ଟ୍ର ଦେଶର ସ୍ଥାନ ନିର୍ଦ୍ଦେଶ କରିଦେବେ । ମହାରାଷ୍ଟ୍ରର ସୀମା ଓ ପ୍ରାକୃତିକ ପରିସ୍ଥିତି ବର୍ଣ୍ଣନା କରି ଅଧିବାସୀଙ୍କ ଉପରେ ତାହାର ଭୌଗୋଳିକ ପ୍ରଭାବ ଛାତ୍ରମାନଙ୍କ ଦ୍ୱାରା ନିର୍ଣ୍ଣୟ କରିବେ ।

| | |
|---|---|
| ୨୧ (ଗ) ସାହଜୀ ଭୋଁସଲେ—<br>ଆହମ୍ମଦନଗରର ସେନାପତି, ରାଜ-<br>ନିର୍ମାତା । ପୁନାର ଜାଗିଦାରର ।<br>ଆହମ୍ମଦନଗରର ପତନ ପରେ<br>ବିଜାପୁରରେ ଗୃହକର୍ତ୍ତା—କର୍ଣ୍ଣାଟର<br>ଜାଗିରଦାର । | ସାହଜୀ ଭୋଁସଲେଙ୍କ ଜୀବନୀ ବର୍ଣ୍ଣନା କରି<br>ଶିକ୍ଷକ ଶିବାଜୀଙ୍କ ବଂଶ ପରିଚୟ ଓ ରାଜ-<br>ନୈତିକ ସୂତ୍ରଧାର ଆଭାସ ଛାତ୍ରମାନଙ୍କୁ<br>ଦେବେ । |
| (ଘ) ସମର୍ଥ ରାମଦାସ ସ୍ୱାମୀ ଶିବାଜୀଙ୍କ<br>ଧର୍ମଗୁରୁ, ହିନ୍ଦୁରାଜ୍ୟସ୍ଥାପନ<br>ଉପଦେଶ | ରାମଦାସଙ୍କ ସଂକ୍ଷିପ୍ତ ଧାରଣା ଦେଇ ସେ କପରି<br>ଶିବାଜୀଙ୍କୁ ହିନ୍ଦୁରାଜ୍ୟସ୍ଥାପନ ପ୍ରେରଣା<br>ଦେଇଥିଲେ, ତାହା ବୁଝାଇବେ । |

ଜ୍ଞାନପ୍ରଦାନ:—

ପ୍ରଥମ ସୋପାନ

| | |
|---|---|
| ଶିବାଜୀଙ୍କ ବାଲ୍ୟ ଜୀବନ-ଜନ୍ମ—<br>୧୬୨୭ ପୁନା, ପିତୃପରିତ୍ୟକ୍ତ<br>—ମାତା ଜୀଜା, ଅଭିଭାବକ<br>କଣ୍ଡଦେବ—ଅଳ୍ପ ଶିକ୍ଷା, ଶାରୀରିକ | ଶିକ୍ଷକ ଶିବାଜୀଙ୍କ ବାଲ୍ୟ ଜୀବନ, ଶିକ୍ଷା ଓ<br>ମାବଲେ ସେନାଗଠନ ସମ୍ବନ୍ଧରେ ଛାତ୍ରମାନଙ୍କୁ<br>ପୂର୍ଣ୍ଣଧାରଣା ଦେବେ । |

କର୍ଷଣ—ଧର୍ମପ୍ରାଣ ମାତାଙ୍କର
ଆଦର୍ଶ: ଧର୍ମ, ଜାତି, ଗୋ,
ବ୍ରାହ୍ମଣଭକ୍ତି ଓ ରକ୍ଷା ।
ଯୌବନ—

ପାର୍ବତ୍ୟ ମାବଲେ ଜାତି,
ମାବଲେ ସେନା ସଂଗ୍ରହ ।

ବିଜାପୁର ଆକ୍ରମଣ—
୧୬୪୮-ରାଜନୈତିକ ଜୀବନ
ଆରମ୍ଭ ।୧୦ବର୍ଷ ମଧ୍ୟରେ ତୋର୍ଣ୍ଣା,
ରାୟଗଡ଼ ପ୍ରଭୃତି ଦୁର୍ଗ ଓ ଭୂଖଣ୍ଡ
ଅଧିକାର ।

ବିଭାଗୀୟ ଆବୃତ୍ତି

ମାବଲେ ସେନା ସାହାଯ୍ୟରେ ଶିବାଜୀ କିପରି
ବିଜାପୁରର କେତେକ ଦୁର୍ଗ ଓ ଏକ ଭୂଖଣ୍ଡ
ଅଧିକାର କଲେ, ଶିକ୍ଷକ ବର୍ଣ୍ଣନା କରିବେ ।

ନିମ୍ନଲିଖିତ ପ୍ରଶ୍ନ ପଚାରି ବିଭାଗୀୟ ଆବୃତ୍ତି
କରିବେ ।

୧. ଶିବାଜୀଙ୍କ ସଂକ୍ଷିପ୍ତ ପରିଚୟ ଦିଅ ।
୨. ସେ କିପରି ଏକ ସେନାଦଳ ଗଠନ କଲେ ?

ଦ୍ୱିତୀୟ ବିଭାଗ

ବିଜାପୁର ସଙ୍ଗେ ଯୁଦ୍ଧ—

ବିଜାପୁର ସେନାପତି ଆଫଜଲଖାଁ,

—'ବିଚ୍ଛୁଆ' ଓ 'ବାଘନଖ'

—ଆଫଜଲ ହତ୍ୟା, ବିଜାପୁର ସେନାର ପଳାୟନ

—୪, ୦୦୦ ଅଶ୍ୱ, ଅସ୍ତ୍ରଶସ୍ତ୍ର ଓ ଧନ ଅଧିକାର

—ବିଜାପୁର ସୁଲତାନଙ୍କ ଶୋକ ଓ ସନ୍ଧି ।

୩. ସେ କପରି 'ହିନ୍ଦୁ ରାଜ୍ୟ'ର ମୂଳଭିତ୍ତି ସ୍ଥାପନ କଲେ ?

ଶିକ୍ଷକ ଏଠାରେ ବର୍ଣ୍ଣନା କରିବେ ଯେ ଶିବାଜୀ କପରି ଆଫଜଲଙ୍କୁ ହତ୍ୟା କଲେ ଏବଂ ବିଜାପୁର ସୁଲତାନ କପରି ଭୟଭୀତ ହୋଇ ସନ୍ଧି କଲେ ଏବଂ ଶିବାଜୀଙ୍କ ଅଧିକୃତ ଭୂଖଣ୍ଡ ଓ ଦୁର୍ଗମାନ ତାଙ୍କୁ ଛାଡ଼ି ଦେଲେ ।

ବିଭାଗୀୟ ଆବୃତ୍ତି :—

ବିଭାଗୀୟ ପ୍ରଶ୍ନ ପତ୍ରର ପଠିତାଂଶର ଆବୃତ୍ତି କରାଇବେ ।

୧. ଶିବାଜୀ କପରି ଆଫଜଲ୍ ଖାଁଙ୍କୁ ବଧ କଲେ ?

୨. ଆଫଜଲହତ୍ୟାର ଫଳ କଣ ହେଲା ?

ତୃତୀୟ ଘଣ୍ଟା

ମୋଗଲ୍ ସଙ୍ଗେ ଯୁଦ୍ଧ :—

ବିଜାପୁର ସନ୍ଧି ପରେ ମୋଗଲ ରାଜ୍ୟ ଆକ୍ରମଣ

— ଶାୟିସ୍ତା ଖାଁଙ୍କ ସଙ୍ଗେ ଗରିଲ୍ଲା ଯୁଦ୍ଧ ଓ ରାତ୍ରି ଆକ୍ରମଣ

— ଖାଁ ପୁନା ଶିବିର ମଧ୍ୟରେ ଅଙ୍ଗୁଳି ଓ ପୁତ୍ର ହରାଇଲେ (୧୬୬୨)

— ସୁରାଟଲୁଣ୍ଠନ ।

—ଜୟସିଂହ ଓ ସନ୍ଧି

—ଶିବାଜୀ ଆଗ୍ରାରେ ବନ୍ଦୀ ଓ ବନ୍ଦୀଗୃହରୁ ପଳାୟନ

ବିଜାପୁର ସନ୍ଧି ପରେ ଶିବାଜୀ କପରି ମୋଗଲ ରାଜ୍ୟରେ ଉତ୍ପାତ ଆରମ୍ଭ କଲେ ଏବଂ ଶାୟିସ୍ତାଙ୍କୁ ରାତ୍ରରେ ପୁନାରେ ଆକ୍ରମଣ କଲେ, ଶିକ୍ଷକ ବର୍ଣ୍ଣନା କରିବେ ।

ଜୟସିଂହ ସନ୍ଧିକରି କପରି ତାଙ୍କୁ ଡାକନେଲେ ଏବଂ ଶିବାଜୀ ଆଗ୍ରାର ବନ୍ଦୀଘରୁ କପରି ପଳାଇ ଆସି ଭୀଷଣ ଯୁଦ୍ଧ ଚଳାଇଲେ, ତା ପରେ ଶିକ୍ଷକ ବୁଝାଇ ଦେବେ ଏବଂ ଆଓରଙ୍ଗଜେବ କପରି ଶିବାଜୀଙ୍କୁ ସ୍ୱାଧୀନ ରାଜା ବୋଲି ସ୍ୱୀକାର କଲେ ଏବଂ ଶିବାଜୀ ସ୍ୱାଧୀନ ରାଜା ରୂପେ ରାୟଗଡ଼ଠାରେ ଅଭିଷେକ ହେଲେ, ସେକଥା ଶିକ୍ଷକ ବର୍ଣ୍ଣନା କରିବେ । ଶିବାଜୀ କପରି

—ଭୀଷଣ ଯୁଦ୍ଧ ।

—ସେନାପତି ଯଶୋବନ୍ତ ସିଂହଙ୍କ ପରାମର୍ଶରେ ଆଓରଙ୍ଗଜେବ ଶିବାଜୀଙ୍କୁ ରାଜା ବୋଲି ସ୍ୱୀକାର କଲେ (୧୬୬୮)

— ରାୟଗଡ଼ରେ ଅଭିଷେକ (୧୬୭୨)

—ମୋଗଲ ରାଜ୍ୟରୁ ଚୌଥ ସଂଗ୍ରହ

—ଶିବାଜୀଙ୍କ ମୃତ୍ୟୁ (୧୬୮୦) ।

ଶିବାଜୀଙ୍କ ମୃତ୍ୟୁ ବେଳେ ମହାରାଷ୍ଟ୍ର ରାଜ୍ୟର ସୀମା :—

ଉ: ସାତପୁରା ଦ: ତୁଙ୍ଗଭଦ୍ରା

— ଦୈର୍ଘ୍ୟ ୪୦୦ ମାଇଲ ।

ପୂ: ପେନଗଙ୍ଗା ପ: ଆରବ-ସମୁଦ୍ର

—ପ୍ରସ୍ଥ ୧୨୦ ମାଇଲ ।

ମୃତ୍ୟୁ ପୂର୍ବରୁ ମୋଗଲ ସୁବାମାନଙ୍କରୁ ଚୌଥ ସଂଗ୍ରହ କଲେ, ତାହା ମଧ୍ୟ ଗ୍ରୁପମାନଙ୍କୁ ବୁଝାଇ ଦେବେ ।

ଶିକ୍ଷକ ଶିବାଜୀଙ୍କ ରାଜ୍ୟସୀମା ଆଲୋଚନା କରି କଳାପଟାର ମାନଚିତ୍ରରେ ସୀମା ନିର୍ଦ୍ଦେଶ କରି-ଦେବେ ଏବଂ ଦୈର୍ଘ୍ୟପ୍ରସ୍ଥ କଳାପଟାରେ ଲେଖିଦେବେ ।

ଵଭାଗୀପ୍ତ ଆବୃତ୍ତି :—

ନିମ୍ନଲିଖିତ ପ୍ରଶ୍ନଦ୍ୱାରା ଶିକ୍ଷକ ଵଭାଗୀପ୍ତ ଆବୃତ୍ତି କରାଇବେ।

୧. ଶିବାଜୀ ଶାୟିସ୍ତା ଖାଁଙ୍କୁ କପରି ପରାସ୍ତ କଲେ ?

୨. ଜୟସିଂହ ଶିବାଜୀଙ୍କୁ କପରି ଆଗ୍ରାକୁ ଡାକ-ନେଲେ ?

୩. ଆଗ୍ରାରେ କଣ ଘଟିଲା ?

୪. ଆରଙ୍ଗଜେବ କାହିଁକି ଶିବାଜୀଙ୍କୁ ରାଜା ବୋଲି ସ୍ୱୀକାର କଲେ ?

୫. ଶିବାଜୀଙ୍କ ଅଭିଷେକ ବିଷୟରେ କଣ ଜାଣ ?

୬. ଅଭିଷେକ ପରେ କଣ ଘଟିଲା ?

୭. ମହରଟ୍ଟା ସ୍ୱାଧୀନରାଜ୍ୟର ସୀମା ଓ ବୈର୍ଦ୍ଧ୍ୟପ୍ରସ୍ଥ ବର୍ଣ୍ଣନା କର ।

## ପ୍ରୟୋଗ—

**କର୍ମମୂଳକ ଶିକ୍ଷା**—କଳାପଟାର ସମସ୍ତ କାର୍ଯ୍ୟ କରାଇ ଦେଇ ଶିକ୍ଷକ ଛାତ୍ରମାନଙ୍କୁ ନିଜ ନିଜ ନୋଟ୍ ଖାତାରେ ଭାରତର ସୀମାମାନଚିତ୍ର ଆଙ୍କିବାକୁ କହିବେ । ତହିଁରେ ମୋଗଲ ସାମ୍ରାଜ୍ୟ, ବିଜାପୁର ରାଜ୍ୟ, ଗୋଲକୁଣ୍ଡା ରାଜ୍ୟ ଓ ମହାରଷ୍ଟ୍ର ରାଜ୍ୟର ସୀମା ଛାତ୍ରମାନେ ଦେଖାଇବେ । ଶିବାଜୀଙ୍କ ରାଜ୍ୟ ଭିତରେ ତୋର୍ଣ୍ଣା, ପୁରନ୍ଦର, ପୁନା ଓ ରାୟଗଡ଼ର ସ୍ଥାନ ଏବଂ ଭାରତର ଅନ୍ୟାନ୍ୟ ସୁରାଟର ସ୍ଥାନ ଛାତ୍ରମାନେ ଦେଖାଇବେ ।

**ଜ୍ଞାନପରୀକ୍ଷା**—ଶିକ୍ଷକ ଶେଷରେ ନିମ୍ନଲିଖିତ ପ୍ରଶ୍ନଦ୍ୱାରା ଛାତ୍ରମାନଙ୍କର ଉପାର୍ଜିତ ଜ୍ଞାନ ପରୀକ୍ଷା କରିବେ ।

ପ୍ରଶ୍ନ:—୧. ଶିବାଜୀଙ୍କ ଜନ୍ମ ଓ ବାଲ୍ୟଶିକ୍ଷା ସମ୍ବନ୍ଧରେ କଣ ଜାଣ ?

୨. ଶିବାଜୀ ବିଜାପୁର ରାଜ୍ୟରୁ କପରି ଅଂଶ ଓ ଦୁର୍ଗମାନ ଦଖଲ କରିନେଲେ ?

୩. ମୋଗଲ ସମ୍ରାଟଙ୍କ ସେନାପତିମାନଙ୍କୁ ଶିବାଜୀ କପରି ବିଫଳ କଲେ ?

୪. ଆଓରଙ୍ଗଜେବ ତାଙ୍କୁ କାହିଁକି ସ୍ୱାଧୀନ ରାଜା ବୋଲି ସ୍ୱୀକାର କଲେ ?

୫. ସ୍ୱାଧୀନ ହେବା ପରେ ଶିବାଜୀ କଣ କଲେ ?

୬. ସ୍ୱାଧୀନ ମହାରଷ୍ଟ୍ର ରାଜ୍ୟର ସୀମା ବର୍ଣ୍ଣନ କର ।

ଶେଷରେ ଶିକ୍ଷକ କଳାପଟାରେ ସାରାଂଶ ଲେଖିଦେବେ ଏବଂ ଛାତ୍ରମାନେ ତାହା ନୋଟ୍‌ଖାତାରେ ଉତାରିନେବେ ।

କଳାପଠାରେ ସାରାଂଶ :—

## ଶିବାଜୀଙ୍କ ମହାରଷ୍ଟ୍ର ରାଜ୍ୟସ୍ଥାପନ

୧. ବାଲ୍ୟଜୀବନ ଓ ଶିକ୍ଷା—

ପିତା ସାହଜୀ ଭୌଁସଲେ ପୁନାର ଜାଗିରଦାର । ଜନ୍ମ-ପୁନା,୧୬୨୭। ମାତା ଜୀଜାବାଈ, ଅଭିଭାବକ କଣ୍ଡଦେବ, ପିତୃପରିତ୍ୟକ୍ତ । ଅଳ୍ପ ଶିକ୍ଷା, ଶରୀରକର୍ଷଣ ଓ ଉଚ୍ଚ ଆଦର୍ଶ ।

୨. ଯୁଦ୍ଧଜୀବନ—

(କ) ମାବଲେ ସେନାସଂଗ୍ରହ, ବିଜାପୁର ଆକ୍ରମଣ, ଚାକନ୍, ତୋର୍ଣ୍ଣା, ପୁରନ୍ଦର ପ୍ରଭୃତି ଦୁର୍ଗ ଅଧିକାର ।

(ଖ) ବିଜାପୁର ସେନାପତି ଆଫଜଲ୍ ଖାଁଙ୍କ ହତ୍ୟା—ବିଜାପୁର ସୁଲତାନଙ୍କ ସନ୍ଧି ।

(ଗ) ମୋଗଲ୍ ରାଜ୍ୟରେ ଉତ୍ପାତ—ଶାୟିସ୍ତା ଖାଁ ଦଣ୍ଡ—ଜୟ-ସିଂହଙ୍କ ସନ୍ଧି—ଆଗ୍ରାରେ ବନ୍ଦୀ—ବନ୍ଦୀଘରୁ ପଳାୟନ—ମୋଗଲ ସଙ୍ଗେ ଭୀଷଣ ଯୁଦ୍ଧ—ସ୍ୱାଧୀନ ରାଜା ଓ ଅଭିଷେକ ।

୩. ସ୍ୱାଧୀନ ମହାରଷ୍ଟ୍ର ରାଜ୍ୟ—

ଉ: ସାତପୁରା ➢ ◂ ଦ: ତୁଙ୍ଗଭଦ୍ରା = ଦୈର୍ଘ୍ୟ୪୦୦ ମାଇଲ୍ ।

ପୂ: ଗୋଲକୁଣ୍ଡା ➢ ◂ ପ: ଆରବସମୁଦ୍ର = ପ୍ରସ୍ଥ୧୧୦ ମାଇଲ୍ ।



ଶ୍ରେଣୀ—ନବମ

ପାଠ— ମଗଧ ସାମ୍ରାଜ୍ୟର ଉତ୍‌ଥାନ ଓ ଉନ୍ନତି

( ଆବୃତ୍ତି ଓ ସଂଗଠନ ପାଠ )

ସମୟ— ୪୫ ମିନିଟ୍ ।

| ସୋପାନ | ବିଷୟବସ୍ତୁ | ପ୍ରଣାଳୀ | ମନ୍ତବ୍ୟ |
|---|---|---|---|
| ଉପକ୍ରମ —ଉଦ୍ଦେଶ୍ୟ ଜ୍ଞାପନ | | ଶିକ୍ଷକ ଛାତ୍ରମାନଙ୍କୁ କହିବେ, ତୁମ୍ଭେମାନେ ବିଭିନ୍ନ ବଂଶର ରାଜତ୍ୱକାଳରେ ମଗଧର ଇତିହାସ ପଢ଼ିଛ । ହିନ୍ଦୁଯୁଗର ମଗଧର ଇତିହାସ ବୋଇଲେ ସମଗ୍ର ଉତ୍ତର ଭାରତର ଇତିହାସ ଏବଂ କଦାଚିତ୍ ସମଗ୍ର ଭାରତର ଇତିହାସକୁ ବୁଝାଏ ।<br>‘ଆଜି ଆମ୍ଭେମାନେ ଦେଖିବା କିପ୍ରକାରେ ମଗଧର ଉତ୍‌ଥାନ ଓ ଉନ୍ନତି ହୋଇଥିଲା ।’ | |

| | |
|---|---|
| “ମଗଧର ଉତ୍ଥାନ ଓ ପତନ” | ଏହା କହି କଳାପଟାରେ ଲେଖି-ଦେବେ, 'ମଗଧର ଉତ୍ଥାନ ଓ ପତନ'। |
| ଜ୍ଞାନଦାନ    ପ୍ରଥମ ବିଭାଗ | |
| ପ୍ରାଚୀନ ଭାରତ ସଙ୍ଗେ ସମନ୍ୱୟ ସ୍ଥାପନ — ଯୁଧିଷ୍ଠିର ଓ ଜରାସନ୍ଧ ବା ହସ୍ତିନା ଓ ମଗଧ ମଧ୍ୟରେ ଚକ୍ରବର୍ତ୍ତୀ ହେବା ପାଇଁ ପ୍ରତିଯୋଗିତା। | ଶିକ୍ଷକ ନିମ୍ନଲିଖିତ ପ୍ରଶ୍ନ ପଚାରିବେ—<br>୧. ମହାଭାରତରୁ ହସ୍ତିନାର କେଉଁ ରାଜାଙ୍କ ଓ ମଗଧର କେଉଁ ରାଜାଙ୍କ ଯୁଦ୍ଧ କଥା ଜାଣିଛ ?<br>୨. ସେମାନେ କାହିଁକି ଲଢ଼ିଥିଲେ ?<br>୩. କିଏ ଭାରତର ଚକ୍ରବର୍ତ୍ତୀ ହେଲେ ?<br>ଶିକ୍ଷକ ବର୍ତ୍ତମାନ କହିଦେବେ, ଜରାସନ୍ଧଙ୍କ ପରବର୍ତ୍ତୀ ମଗଧର ବିବରଣ ମିଳେ ନାହିଁ। |

ପ୍ରଥମ ଆବର୍ତ୍ତ :—

ଶୈଶୁନାଗ ବଂଶ—

କାଶୀର କ୍ଷତ୍ରିୟ ସେନାପତି ଶିଶୁନାଗଙ୍କ ମଗଧ ଅଧିକାର

— ରାଜଧାନୀ : ରାଜଗୃହ

ରାଜ୍ୟ : ପାଟଣା ଓ ଗୟା ଜିଲ୍ଲା

ଖ୍ରୀ:ପୂ: ୬୦୦—ଶିଶୁନାଗ

ଖ୍ରୀ:ପୂ: ୫୮୨—ବିମ୍ବିସାର

ଖ୍ରୀ:ପୂ: ୫୫୪—ଅଜାତଶତ୍ରୁ

ଖ୍ରୀ:ପୂ: ୪୧୩ } ମହାପଦ୍ମ ଉଗ୍ରସେନନନ୍ଦ

ଖ୍ରୀ:ପୂ: ୩୨୫ } ନନ୍ଦବଂଶର ରାଜତ୍ୱକାଳ

ଖ୍ରୀ:ପୂ: ୩୦୦ } ଚନ୍ଦ୍ରଗୁପ୍ତ ମୌର୍ଯ୍ୟ

ଖ୍ରୀ:ପୂ: ୨୭୩ } ଅଶୋକ ମୌର୍ଯ୍ୟ
ଖ୍ରୀ:ପୂ: ୨୩୨ }

ପ୍ରଶ୍ନ—୧. ଜରାସନ୍ଧଙ୍କ ରାଜଧାନୀର ନାମ କଣ ? ତାହାର ଅବସ୍ଥାନ ବର୍ଣ୍ଣନ କର ।

ଶିକ୍ଷକ ଗୁହମାନଙ୍କର ବର୍ଣ୍ଣନା ପୂର୍ଣ୍ଣ କରିବେ ଏବଂ ପାର୍ବତ୍ୟ ଦୁର୍ଗ ରାଜଧାନୀ ରାଜଗୃହର ଦୁଷ୍ପ୍ରବେଶ୍ୟତା ଓ ଅଜେୟତାର ସୂଚନା ଦେବେ ।

ପ୍ରଶ୍ନ—୨. ଶିଶୁନାଗ କିଏ ? ସେ କପର ମଗଧର ରାଜା ହେଲେ ?

୩. ସେତେବେଳେ ମଗଧର ସୀମା ମାନଚିତ୍ରରେ ଗୁହମାନେ ଗୟା ଓ ପାଟଣା ଜିଲ୍ଲାମାନ ଦେଖାଇବେ । ତହିଁରେ ରାଜଗୃହର ସ୍ଥାନ ନିର୍ଦ୍ଦେଶ କରିବେ ।

ଦ୍ୱିତୀୟ ଆବୃତ୍ତି :—

ହର୍ଯ୍ୟଙ୍କ ବଂଶ—

ବିମ୍ବିସାର—କାଶୀ ଓ ଅଙ୍ଗମିଶ୍ରଣ

ଅଜାତଶତ୍ରୁ—କୋଶଳ ଓ ବୈଶାଳୀ ମିଶ୍ରଣ

—ପାଟଳିପୁତ୍ର ଦୁର୍ଗ ରାଜଧାନୀ ନିର୍ମାଣ

ଶିକ୍ଷକ କଳାପଟାରେ ସମୟରେଖା କାଟି ୬୦୦ ଖ୍ରୀଷ୍ଟପୂର୍ବାବ୍ଦ ଓ ଶିଶୁନାଗଙ୍କ ନାମ ଲେଖିଦେବେ ।

ଶିକ୍ଷକ ପ୍ରଶ୍ନଦ୍ୱାରା ଛାତ୍ରମାନଙ୍କଠାରୁ ବିଷୟବସ୍ତୁ ସମ୍ପୃକ୍ତ ଘଟନାମାନ ଆଦାୟ କରିବେ ।

୧. ବିମ୍ବିସାର କାଶୀ ଓ ଅଙ୍ଗ କିପରି ନିଜ ରାଜ୍ୟରେ ମିଶାଇଲେ ?

୨. କୋଶଳ ଓ ବୈଶାଳୀ ଅଜାତଶତ୍ରୁ କିପରି ମଗଧରେ ମିଶାଇଲେ ?

୩. ପାଟଳିପୁତ୍ର ଦୁର୍ଗ ରାଜଧାନୀ କାହାଙ୍କ ନିର୍ମିତ ହୋଇଥିଲା ?

ସୀମାମାନଚତ୍ରରେ ଛାତ୍ରମାନେ ଭିନ୍ନ ରଙ୍ଗ ଦେଇ ମଗଧର ବର୍ଦ୍ଧିତ ସୀମା ଦେଖାଇବେ ଏବଂ ପାଟଳିପୁତ୍ର ଚିହ୍ନଟ କରିବେ । ସମୟରେଖାରେ ଅଦ୍ଧ-ମାନ ଲେଖି ଶିକ୍ଷକ ବିମ୍ବିସାର ଓ ଅଜାତଶତ୍ରୁଙ୍କ କାଳ ନିର୍ଦ୍ଧେଶ କରିବେ ।

ତୃତୀୟ ଆବର୍ତ୍ତ :—

ନନ୍ଦବଂଶ —

ମହାପଦ୍ମ ଉଗ୍ରସେନ ନନ୍ଦ —

ରାଜ୍ୟସୀମା — ଉ: ହିମାଳୟ

ଦ: ବିନ୍ଧ୍ୟ,

ପ: ଗଙ୍ଗା-ଚମ୍ବଲ

ପୂ: ବ୍ରହ୍ମପୁତ୍ର ।

ସେନା—ରଥ— ୨,୦୦୦

ଗଜ — ୩,୫୦୦

ଅଶ୍ୱ — ୨୦,୦୦୦

ପଦାତି—୨୦୦,୦୦୦

କୋଷ—ଧନଶାଳୀ

ପୂର୍ବବତ୍ ବିଷୟବସ୍ତୁ ପ୍ରଶ୍ନଦ୍ୱାରା ଆଦାୟ କରାଯିବ ଏବଂ ନୂତନ ସୀମା ଓ ସମୟ ରେଖାର କାର୍ଯ୍ୟ ହେବ ।

ପ୍ରଶ୍ନ—୧. ମହାପଦ୍ମଙ୍କର ସୈନ୍ୟ-ସଂଖ୍ୟା କହ ।

୨. ତାଙ୍କର ରାଜ୍ୟ ସୀମା ନିର୍ଣ୍ଣୟ କର ।

୩. ସେ କାହୁଁକି ବିଶେଷ ଧନ ସଞ୍ଚୟ କରି ପାରିଥିଲେ ?

ଶିକ୍ଷକ ବର୍ତ୍ତମାନ ରାଜ୍ୟସୀମା,କୋଷ୍ଠ ଓ ସେନା ବିଷୟରେ ଛାତ୍ରମାନଙ୍କ ସଙ୍ଗେ ଆଲୋଚନା କରିବେ ଏବଂ ମଗଧର କ୍ଷମତାବୃଦ୍ଧି ପ୍ରତି ଛାତ୍ରମାନଙ୍କର ଦୃଷ୍ଟି ଆକର୍ଷଣ କରି ଆଲେକଜାଣ୍ଡାର ମଗଧ ଆକ୍ରମଣକୁ ଡରି ନିଜ ରାଜ୍ୟକୁ ଫେରିଯିବା କଥା ସ୍ମରଣ କରାଇଦେବେ ।

ବିଭାଗୀୟ ଆବୃତ୍ତି—

ପ୍ରଶ୍ନ—୧. ଶୈଶୁନାଗ ରାଜତ୍ୱରେ ମଗଧର ସୀମା କେତେ ଥିଲା ? ରାଜଧାନୀ କଣ ?

୨. ହର୍ଯ୍ୟଙ୍କ ରାଜତ୍ୱରେ ସୀମା କେତେ ବଢ଼ିଲା ? ରାଜଧାନୀ କଣ ?

୩. ନନ୍ଦବଂଶ ଅମଳରେ ମଗଧର କଣ କଣ ବଢ଼ିଥିଲା ? ରାଜଧାନୀ ?

ଦ୍ୱିତୀୟ ବିଭାଗ—

ମୌର୍ଯ୍ୟବଂଶ—

ପ୍ରଥମ ଆବର୍ତ୍ତ –
( ରାଜ୍ୟସୀମା )

ଉ: ହିମାଳୟ, ଦ: ପେନାର,
ପ: ହିନ୍ଦୁକୁଶ, ପୂ: ବ୍ରହ୍ମପୁତ୍ର ।
ଅର୍ଥାତ୍
ସମଗ୍ର ଭାରତ

ଶିକ୍ଷକ ସମୟରେଖାରେ ଚନ୍ଦ୍ରଗୁପ୍ତ ମୌର୍ଯ୍ୟ ଓ ଅଶୋକ ମୌର୍ଯ୍ୟଙ୍କ ରାଜତ୍ୱକାଳ ନିର୍ଦ୍ଦେଶ କରିଦେବେ ।

ପ୍ରଶ୍ନ – ୧. ଚନ୍ଦ୍ରଗୁପ୍ତଙ୍କ ମଗଧ ସିଂହାସନ ଅଧିକାର ବେଳେ ମଗଧର ସୀମା କେତେ ଥିଲା ?

୨. ଚନ୍ଦ୍ରଗୁପ୍ତ ସେହି ସୀମା କେତେ ଦୂର ବଢ଼ାଇ-ଥିଲେ ? ବିନ୍ଦୁସାର କେତେ ବଢ଼ାଇଥିଲେ ?

ଦ୍ୱିତୀୟ ଆବର୍ତ୍ତ—

( ସେନା )

ରଥ— ୮,୦୦୦

ଗଜ— ୯,୦୦୦

ଅଶ୍ୱ— ୩୦,୦୦୦

ପଦାତି— ୬୦୦,୦୦୦

୩. ଅଶୋକ ମୌର୍ଯ୍ୟ କେଉଁ ରାଜ୍ୟ ଜୟ କରିଥିଲେ ?

ଛାତ୍ରମାନେ ଚତୁର୍ଥ ପ୍ରକାର ରଙ୍ଗଦେଇ ସୀମା ମାନଚିତ୍ରରେ ମୌର୍ଯ୍ୟ ଅମଳର ବର୍ଦ୍ଧିତ ରାଜ୍ୟ ଅଂଶ ଦେଖାଇବେ ।

ପ୍ରଶ୍ନ — ୧. ମୌର୍ଯ୍ୟ ଅମଳରେ ମଗଧର ସୈନ୍ୟବଳ କେତେ ଥିଲା ?

ଶିକ୍ଷକ ଛାତ୍ରମାନଙ୍କଦ୍ୱାରା ନନ୍ଦସେନା ସଙ୍ଗେ ମୌର୍ଯ୍ୟ ସେନାର ତୁଳନା କରାଇବେ । ସେମାନଙ୍କଠାରୁ ସୂଚନାଦ୍ୱାରା ଆଦାୟ କରିବେ ଯେ ନନ୍ଦ ସେନାର ପରିଚାଳନା ବିଷୟରେ କିଛି ଜଣା ନ ଥିଲେ ମଧ୍ୟ,ମୌର୍ଯ୍ୟସେନାର ସୁବ୍ୟବସ୍ଥା ନିମନ୍ତେ ୬ଟି ସମିତି ଥିଲା, ଯାହା ସେକାଳର ରାଜ୍ୟବ୍ୟବସ୍ଥାର ଗୌରବର ପରିଚାୟକ ଏବଂ ବଂଶ ଶତାଧିକ

| | |
|---|---|
| | ଲେଖକେ ମଧ୍ୟ ଜାଣି ବସ୍ତୁସ୍ଥ ପ୍ରକାଶ କରୁଛନ୍ତି । |
| ତୃତୀୟ ଆବର୍ତ୍ତ — (ଖ୍ୟା:ତ) — ବୈଦେଶିକ ପ୍ରତିପତ୍ତି ଓ ସମ୍ପର୍କ —ମେଗାସ୍ଥିନିସ— ଅହିଂସା ସାମ୍ରାଜ୍ୟ ଓ ଅଶୋକ — ମହାଦେଶୀୟ ଗୌରବ । | ଶିକ୍ଷକ ଯୁକ୍ତିତର୍କଦ୍ୱାରା ଛାତ୍ରମାନଙ୍କ ସଙ୍ଗେ ମଗଧର ବୈଦେଶିକ ଗୌରବ ଓ କୂଟନୈତିକ ସମ୍ପର୍କ ଆଲୋଚନା କରିବେ । |

ଆଲୋଚନା ଓ ଯୁକ୍ତିତର୍କ ନିମନ୍ତେ ପ୍ରଶ୍ନର ସୂଚନା:—

୧. ସିଲ୍ୟୁକସ କାହାଙ୍କ ଭାରତ ଆକ୍ରମଣ କଲେ ?

୨. ମେଗାସ୍ଥିନିସ କାହାଁକ ପାଟଳିପୁତ୍ରକୁ ଆସିଥିଲେ ?

୩. ଅଶୋକ କେଉଁ କେଉଁ ମହାଦେଶ ଓ ରାଜ୍ୟରେ ଧର୍ମପ୍ରଚାର କରିଥିଲେ ? ତଦ୍ଦ୍ୱାରା ଭାରତର ଗୌରବ ଓ ପ୍ରତିପତ୍ତି କିପରି ବଢ଼ିଲା ?

ଚତୁର୍ଥୀୟ ଆବୃତ୍ତି—

ପ୍ରଶ୍ନ—୧. ମୌର୍ଯ୍ୟ ରାଜତ୍ୱ କାଳରେ ମଗଧର କି କି ବିଷୟରେ ଉନ୍ନତି ହୋଇଥିଲା ?

୨. ଅହିଂସା ଓ ଧର୍ମବିଜୟ କଣ ?

୩. ମଗଧର ରାଷ୍ଟ୍ରଦୂତମାନେ କେଉଁ କେଉଁ ଦେଶରେ କ କ କାର୍ଯ୍ୟ କରିଥିଲେ ?

ଭାରତର ରାଷ୍ଟ୍ରଦୂତମାନେ ଆଜକାଲି କେଉଁ କେଉଁ ଦେଶରେ ଅଛନ୍ତି ? ସେମାନେ ସେଠାରେ କଣ କରନ୍ତି ?

୪. ବିଶ୍ୱ ଜାତିସଂଘର ପ୍ରଧାନ କାର୍ଯ୍ୟ କଣ ? ଅଶୋକ ସେ ଉଦ୍ଦେଶ୍ୟରେ କଣ କଣ କାର୍ଯ୍ୟ କରିଥିଲେ ?

ଜ୍ଞାନ ସଞ୍ଚୟ—ଏହା ପୁନରାବୃତ୍ତି ପାଠ ଏବଂ ବିଶେଷ ଆବୃତ୍ତି ଓ ଜ୍ଞାନପରୀକ୍ଷା ସେତେ ଆବଶ୍ୟକ ନୁହେଁ । ଶିକ୍ଷକ କଳାପଟାର ସାରାଂଶ ଛାତ୍ରମାନଙ୍କର ବିନା ସହ-ଯୋଗରେ ଲେଖିଦେଲେ ଚଳିବ ।

କଳାପଟାର ସାରାଂଶ :—

ମଗଧ ସାମ୍ରାଜ୍ୟର ଉତ୍ଥାନ ଓ ଉନ୍ନତି—

୧. ସାମ୍ରାଜ୍ୟ ନିର୍ମାଣ—(କ) ହର୍ଯ୍ୟଙ୍କ ବଂଶ—ପାଟଳି, ଗୟା, କୋଶଳ ଓ ବୈଶାଳୀ ।

(ଖ) ନନ୍ଦ ବଂଶ— ଉ: ହିମାଳୟ, ଦ: ବିନ୍ଧ୍ୟ, ପ: ଗଙ୍ଗାଚମ୍ବଲ ଓ ପୂ: ବ୍ରହ୍ମପୁତ୍ର ।

(ଗ) ମୌର୍ଯ୍ୟ ବଂଶ — ସମଗ୍ର ଭାରତ:—

ହିନ୍ଦୁକୁଶରୁ ବ୍ରହ୍ମପୁତ୍ର,
ହିମାଳୟରୁ ପେନାର ।

୨. ସେନା — ସାତ ଲକ୍ଷ : ରଥ, ଗଜ, ଅଶ୍ୱ ଓ ପଦାତି ।

୩. ଖ୍ୟାତି — ଆନ୍ତର୍ଜାତିକ ଧର୍ମଖ୍ୟାତି — ଧର୍ମଶାନ୍ତି ପ୍ରତିଷ୍ଠା ଚେଷ୍ଟା,
ଅହିଂସା ପ୍ରଚାର, ବର୍ତ୍ତମାନବଙ୍କଠା ଗୌରବ ଲଭ ।



ଶ୍ରେଣୀ—ଏକାଦଶ

ପାଠ—ମୋଗଲମାନଙ୍କ ଦାକ୍ଷିଣାତ୍ୟ ନୀତି

(ଆବୃତ୍ତି ଓ ସଂଗଠନ ପାଠ)

ସମୟ—୪୫ ମିନିଟ୍

| ସୋପାନ | ବିଷୟବସ୍ତୁ | ପ୍ରଣାଳୀ | ମନ୍ତବ୍ୟ |
|---|---|---|---|
| ଉପକ୍ରମ-ଉଦ୍ଦେଶ୍ୟ ଜ୍ଞାପନ | | ଶିକ୍ଷକ ଛାତ୍ରମାନଙ୍କୁ ଉଦ୍ଦେଶ୍ୟ ଜ୍ଞାପନ କରି କହିବେ, ଆଜି 'ମୋଗଲ ସମ୍ରାଟ୍‌ମାନଙ୍କର ଦାକ୍ଷିଣାତ୍ୟ ନୀତି' ଆଲୋଚନା କରିବା । | |
| | ମୋଗଲମାନଙ୍କର ଦାକ୍ଷିଣାତ୍ୟ ନୀତି | ପାଠର ନାମ କଳାପଟାରେ ଲେଖିଦେବେ । | |
| ଜ୍ଞାନଦାନ | ପ୍ରଥମ ବିଭାଗ :— (୧) ଆକବର, ଜାହାଙ୍ଗିର ଓ ସାହଜାହାନ : (ଖାନ୍ଦେଶ ଓ ଆହମ୍ମଦନଗର) | ଛାତ୍ରମାନେ ନିଜ ନୋଟ୍ ଖାତାରେ ଭାରତର ସୀମାମାନଚିତ୍ରରେ ୧୫୯୦ ରେ ମୋଗଲ ସାମ୍ରାଜ୍ୟର ସୀମା ଓ ଦାକ୍ଷିଣାତ୍ୟର ବିଭିନ୍ନ ରାଜ୍ୟର ସୀମା ଦେଖାଇବେ । ଶିକ୍ଷକ ମଧ୍ୟ ସେହି କାର୍ଯ୍ୟ କଳାପଟାରେ କରିବେ । ଶିକ୍ଷକ ତାପରେ ପଚାରିବେ, | |

| | |
|---|---|
| ଖାନ୍ଦେଶ, ଆହମ୍ମଦନଗର, ବଜାପୁର ଓ ଗୋଲକଣ୍ଡା । | ୧- ଆକବର ଉତ୍ତର ଭାରତ ଜୟ କରି ସାରିବା ବେଳକୁ ଦାକ୍ଷିଣାତ୍ୟରେ କି କି ରାଜ୍ୟ ଥିଲା ? |
| କଚ୍ଦୋବ, ବଶ୍ୟତାସ୍ୱୀକାର ଉକବ ଓ କୂଟନୈତିକ ଦୌତ୍ୟ । | ୨- ଆକବର କି ସୂତ୍ରରେ ଦାକ୍ଷିଣାତ୍ୟ ଜୟ କରିବାକୁ ଚାହିଁଲେ ? |
| ଖାନ୍ଦେଶର ବଶ୍ୟତା ସ୍ୱୀକାର । (୧୫୯୧) | ୩- ତାହାଁର ଫଳ କଣ ହେଲା ? |
| (କ) ଖାନ୍ଦେଶ କର ନ ଦେବାରୁ ୧୫୯୯ ରେ ଆକବରଙ୍କ ରାଜଧାନୀ ବରହଣପୁର ଅଧିକାର ଓ ଆସିରଗଡ଼ ଦୁର୍ଗ ଅବରୋଧ-ଉତ୍କୋଚଦ୍ୱାରା ୧୬୦୧ରେ ଦୁର୍ଗରେ ପ୍ରବେଶ— ଖାନ୍ଦେଶର ବିଲୟ । | ତାପରେ ଖାନ୍ଦେଶ କିପରି ଆକବରଙ୍କ ସାମ୍ରାଜ୍ୟରେ ମିଶିଲା ଶିକ୍ଷକ ପ୍ରଶ୍ନଦ୍ୱାରା ଛାତ୍ରମାନଙ୍କଠାରୁ ଆଦାୟ କରିବେ । |
| (ଖ) ୧୫୯୫ ରେ ଆହମ୍ମଦନଗର ଆକ୍ରମଣ-- ଚାନ୍ଦବିବିଙ୍କ ଯୁଦ୍ଧ | ଆହମ୍ମଦନଗର ବଶ୍ୟତା ସ୍ୱୀକାର ନ କରିବାରୁ ଯାହା ହେଲା, ଶିକ୍ଷକ ଆଲୋ- |

—୧୫୯୬ରେ ସନ୍ଧି—

ବେରର ପ୍ରଦେଶ ମୋଗଲ ସାମ୍ରାଜ୍ୟରେ ମିଶିଲା

ଆବସିନୀୟ ମନ୍ତ୍ରୀ ମାଲିକ ଅମ୍ବର

—ମୋଗଲମାନଙ୍କୁ ବେରାରରୁ ତଡ଼ିବା ଚେଷ୍ଟା—ଯୁଦ୍ଧ (୧୫୯୭)।

ମୋଗଲ ବରହଣପୁରକୁ ବିତାଡ଼ିତ।

ଜାହାଙ୍ଗିର—

ଖୁରମ (ସାହଜାହାନ)ଙ୍କ ୧୬୧୬ରେ

ଚନା କରିବେ ଏବଂ ଗୃହବିବାଦଙ୍କ ଯୁଦ୍ଧ ଛାତ୍ରମାନଙ୍କଠାରୁ ଆଦାୟ କରିବେ ।

ପ୍ରଶ୍ନ—୧- ଗୃହବିବାଦ କଏ ? ସେ କପରି ଯୁଦ୍ଧ କରିଥିଲେ ? ଯୁଦ୍ଧର ଫଳ କଣ ହେଲା ?

ଶିକ୍ଷକ ତାପରେ କହିବେ, ଆହମ୍ମଦ-ନଗର ଦରବାରର ଆବସିନୀୟ ଦଳ ଓ ମନ୍ତ୍ରୀ ମାଲିକ ଅମ୍ବର ସନ୍ଧିରେ ଅସନ୍ତୁଷ୍ଟ ହୋଇ କପରି ପୁଣି ଯୁଦ୍ଧ ଆରମ୍ଭ କଲେ। ଗୃହବିବି ମୃତା। ଶେଷରେ କପରି ମାଲିକ ଅମ୍ବର ଯୁଦ୍ଧରେ ଆକବରଙ୍କ ଅଧିକୃତ ରାଜଧାନୀ ଆହମ୍ମଦନଗର ଓ ରାଜ୍ୟର ଅଧିକାଂଶ ପୁଣି ଜିଣିନେଲେ (୧୬୧୦)।

ଜାହାଙ୍ଗିରଙ୍କ ରାଜତ୍ୱର ଯୁଦ୍ଧ କଥା ଶିକ୍ଷକ ଛାତ୍ରମାନଙ୍କଠାରୁ ଆଦାୟ

ଆହମ୍ମଦନଗର ପୁନରଧିକାର—
୧୬୨୭ ପର୍ଯ୍ୟନ୍ତ ଯୁଦ୍ଧ—ମାଲିକ
ଅମ୍ବରଙ୍କ ମୃତ୍ୟୁ ।
ସାହଜାହାନ—
ମନ୍ତ୍ରୀ ଫତେ ଖାଁଙ୍କ ସୁଲତାନ ହୁସେନ୍
ସାହଙ୍କ ସଙ୍ଗେ ଜଳ—ସାଢ଼େଦଶ
ଲକ୍ଷ ଟଙ୍କା ନେଇ ଦୌଲତାବାଦ
ସମର୍ପଣ (୧୬୩୧)--୧୬୩୩ ରେ
ସାହଜାହାନଙ୍କ ଅହମ୍ମଦନଗର
ଅଧିକାର—ହୁସେନସାହ ଯାବ-
ଜ୍ଜୀବନ ବନ୍ଦୀ ।

କରିବେ ।

ସାହଜାହାନ କପଟ ମନ୍ତ୍ରୀ ଫତେଖାଁଙ୍କୁ ହାତ କଲେ ଏବଂ ଦୌଲତାବାଦ ଓ ଆହମ୍ମଦନଗର ଅଧିକାର କଲେ, ସେକଥା ଶିକ୍ଷକ କହିଦେବେ ଏବଂ ସୁଲତାନ ହୁସେନ ସାହଙ୍କ ଭାଗ୍ୟ ବର୍ଣ୍ଣନା କରିବେ ।

ଷଭଗୀୟ ପ୍ରଶ୍ନ —

୧- ଖାନ୍ଦେଶ କପରି ମୋଗଲସାମ୍ରଜ୍ୟରେ ମିଶିଲ ?

୨- ବେରର କପରି ମୋଗଲସାମ୍ରାଜ୍ୟରେ ମିଶିଲ ?

ଦ୍ୱିତୀୟ ବିଭାଗ—

ସାହଜାହାନ ଓ ଆଓରଙ୍ଗଜେବ—
( ଗୋଲକଣ୍ଡା ଓ ବିଜାପୁର ) :—
ସାହଜୀ ଭୋଁସ୍ଲେଙ୍କ ୧୬୩୫ ରେ ଆହମ୍ମଦନଗରର ପୁନରୁଦ୍ଧାର ଚେଷ୍ଟା—ଗୋଲକଣ୍ଡା ଓ ବିଜାପୁରର ସାହାଯ୍ୟ—ସାହଜାହାନଙ୍କ ସେହି ଦୁଇ ରାଜ୍ୟର ବଶ୍ୟତା ସ୍ୱୀକାର ଦାବି—ଗୋଲକଣ୍ଡା ବିନା ଯୁଦ୍ଧରେ ଓ ବିଜାପୁର ପରାସ୍ତ ହୋଇ ବଶ୍ୟତା ସ୍ୱୀକାର କଲେ ଏବଂ ବାର୍ଷିକ କର ଦେଲେ (୧୬୩୬) ।

୩- ଆହମ୍ମଦନଗର କିପରି ମୋଗଲ ସାମ୍ରାଜ୍ୟରେ ମିଶିଲା ?

ଶିକ୍ଷକ ଏକଥା ବର୍ଣ୍ଣନା କରିବେ, ସାହଜୀ ଅହମ୍ମଦ ନଗରର ସ୍ୱାଧୀନତା ପୁନରୁଦ୍ଧାର ଚେଷ୍ଟା କରି କିପରି ବିଫଳ ହେଲେ ଏବଂ ସାହଜାହାନ କିପରି ବିଜାପୁର ଓ ଗୋଲକଣ୍ଡାରୁ ବାର୍ଷିକ କର ଦାବି କଲେ । ଫଳରେ ସେହି ଦୁଇ ରାଜ୍ୟ କିପରି ମୋଗଲର କରଦ ରାଜ୍ୟରେ ପରିଣତ ହେଲା ।

ମୋଗଲମାନଙ୍କର ସାମ୍ରାଜ୍ୟ ପ୍ରସାର ନୀତି—ଶିବାଜୀଙ୍କ ବିଜାପୁର ଓ ଗୋଲକଣ୍ଡାରୁ ଅର୍ଥ ଆଦାୟ—ଦୁହେଁ ସିଆ ରାଜ୍ୟ—୧୬୮୪ରେ ଆଓରଙ୍ଗଜେବଙ୍କ ଆକ୍ରମଣ—୧୬୮୬ ରେ ବିଜାପୁର ଓ ୧୬୮୭ ରେ ଗୋଲକଣ୍ଡାର ବିଲୟ ।

ଶିକ୍ଷକ ଏହିଣି ଛାତ୍ରମାନଙ୍କୁ ବୁଝାଇଦେବେ ଯେ ଗୋଲକଣ୍ଡା ଓ ବିଜାପୁର ସୁଲତାନମାନେ ସିଆ ଧର୍ମାବଲମ୍ବୀ ଥିଲେ, ଶିବାଜୀ ସେହି ଦୁଇ ରାଜ୍ୟରୁ ଲୁଣ୍ଠନ କରି ମୋଗଲ ସଙ୍ଗେ ଲଢ଼ୁଥିଲେ । ଆଓରଙ୍ଗଜେବଙ୍କ ନୀତି ଥିଲା ସାମ୍ରାଜ୍ୟ ପ୍ରସାର । ତେଣୁ ସେ ୧୬୮୬ ରେ ବିଜାପୁରକୁ ଏବଂ ୧୬୮୭ ରେ ଗୋଲକଣ୍ଡାକୁ ନିଜ ରାଜ୍ୟରେ ଯୁଦ୍ଧଦ୍ୱାରା ମିଶାଇନେଲେ ।

ବିଷୟଗୀୟ ପ୍ରଶ୍ନ—

୧. ବିଜାପୁର ଓ ଗୋଲକଣ୍ଡା କି କାରଣରୁ ଓ କପରି ମୋଗଲର କରଦ ରାଜ୍ୟ ହୋଇଥିଲେ ?

୨. ଆଓରଙ୍ଗଜେବ କାହିଁକି ସେହି ଦୁଇ ରାଜ୍ୟ ଜୟ କଲେ ?

ତୃତୀୟ ବର୍ଗ —

ଦାକ୍ଷିଣାତ୍ୟରେ ସୁଶାସନ ପ୍ରବର୍ତ୍ତନ :—

ଆକବର-ଦାକ୍ଷିଣାତ୍ୟରେ ତିନିସୁବା
: ଖାନ୍ଦେଶ,ବେରାର ଓ ଆହମଦ-
ନଗର

ସାହଜାହାନ —

ତୋଦରମଲ୍ଲଙ୍କ ରାଜସ୍ୱବନ୍ଦୋବସ୍ତ
: ମନ୍ତ୍ରୀ—ମୁର୍ଶିଦକୁଲି ଖାଁ
ପ୍ରତିନିଧି—ଆଓରଙ୍ଗଜେବ
(୧୬୫୩-୫୭)

(୧) ତକାବ ରଣ
(୨) ଦାକ୍ଷିଣାତ୍ୟର ଉନ୍ନତି

ଆଓରଙ୍ଗଜେବ—ପାଞ୍ଚ ସୁବା
: ବିଜାପୁର ଓ ଗୋଲ୍‌କଣ୍ଡା

ଶିକ୍ଷକ ମୋଗଲ ସୁବା ବିଭାଗ ଓ ମୁର୍ଶିଦକୁଲିଖାଁଙ୍କ ରାଜସ୍ୱ ବନ୍ଦୋବସ୍ତ ବିଷୟ ଆଲୋଚନା କରିବେ । ଦାକ୍ଷିଣାତ୍ୟ ଏକ ଅନୁନ୍ନତ ପ୍ରଦେଶ ଥିଲା ଏବଂ ମୁର୍ଶିଦକୁଲିଖାଁ ତକାବରଣ ଦେଇ ଓ ଜଳସେଚନର ବ୍ୟବସ୍ଥା କରି କୃଷିର କପର ଉନ୍ନତି କଲେ ଏବଂ ଦାକ୍ଷିଣାତ୍ୟରେ ରାଜସ୍ୱ କପର ବୃଦ୍ଧି କଲେ, ତତ୍ପ୍ରତି ଛାତ୍ରମାନଙ୍କର ଦୃଷ୍ଟି ଆକର୍ଷଣ କରିବେ ।

ବର୍ଗଗୀୟ ଆବୃତ୍ତି—

ପ୍ରଶ୍ନ—୧. ଆକବରଙ୍କ ଅମଳରେ ଦାକ୍ଷିଣାତ୍ୟରେ କ କ ସୁବା ଥିଲା ? ଆଓରଙ୍ଗଜେବଙ୍କ ଅମଳରେ କ କ ସୁବା ବଢ଼ିଲା ?

୨. ଦାକ୍ଷିଣାତ୍ୟ କାହାଁକୁ ଏକ ଅନାଟନ ଅଞ୍ଚଳ ଥିଲା ? ମୁର୍ଶିଦକୁଲି ଖାଁ କପରି ତହାଁର ଉନ୍ନତି କଲେ ଏବଂ କପରି କୃଷି ଓ ରାଜସ୍ୱର ଉନ୍ନତି କଲେ ?

ଚତୁର୍ଥ ବିଭାଗ—

ଆଓରଙ୍ଗଜେବ ଓ ବାହାଦୁରସାହ—
ଶିବାଜୀ—ଶାୟିସ୍ତା, ଜୟସିଂହ ଓ ଯଶୋବନ୍ତ ସିଂହ — ମହାରାଷ୍ଟ୍ରରାଜ୍ୟ-ସ୍ଥାପନ-୪୦୦ ମାଇଲ × ୧୨୦ ମାଇଲ ।
ଶମ୍ଭୁଜୀ — ଫାସି, ସାହୁଜୀ — ବନ୍ଦୀ ।
ରାଜାରାମ — ଗରିଲାଯୁଦ୍ଧ, ମୃତ୍ୟୁ ।
ତାରାବାଈ-ଆଓରଙ୍ଗଜେବଙ୍କ ମୃତ୍ୟୁ ।
ବାହାଦୁରସାହ ସନ୍ଧି କରି ସାହୁଙ୍କୁ କାରାମୁକ୍ତ କରିବାରୁ ସାହୁ ଓ

ମୋଗଲସାମ୍ରାଜ୍ୟର ଚରମୋନ୍ନତବେଳେ ଶିବାଜୀ କପରି ମହାରାଷ୍ଟ୍ର ରାଜ୍ୟ ସ୍ଥାପନ କରିଥିଲେ; ତାଙ୍କ ମୃତ୍ୟୁ ପରେ ଶମ୍ଭୁଜୀଙ୍କୁ ଫାସି ଦେଇ ଏବଂ ସାହୁଜୀଙ୍କୁ ବନ୍ଦୀ କରି ଆଓରଙ୍ଗଜେବ ମନେକଲେ, ମହାରାଷ୍ଟ୍ର ଶକ୍ତିକୁ ଉଚ୍ଛେଦ କରିଛନ୍ତି; କିନ୍ତୁ ରାଜା-ରାମ ଓ ତାରାବାଈ ଦେଖାଇଦେଲେ, ରାଜା ବା ନେତାର ମୃତ୍ୟୁରେ ମରହଟ୍ଟା-ଜାତି ଦବିଯିବ ନାହିଁ ଏବଂ ଜାତିର

ତାରାବାଈଙ୍କ ଗୃହଯୁଦ୍ଧ (୧୭୦୭)।

ନେତୃତ୍ୱରେ ଅଗ୍ରବ ନାହିଁ । ସେମାନେ ମୋଗଲଙ୍କୁ ରାଏଗଡ଼ରୁ ତଡ଼ିଦେଲେ ।

ବାହାଦୁର ସାହ ୧୭୦୭ ରେ ବାଧ୍ୟ ହୋଇ ସନ୍ଧି କଲେ ଏବଂ ସାହୁଙ୍କୁ କାରାମୁକ୍ତ କଲେ ।

ଫଳରେ ସାହୁ ଓ ତାରା ଗୃହଯୁଦ୍ଧ କଲେ ଏବଂ ମୋଗଲମାନେ ମହରଟ୍ଟାମାନଙ୍କ ସଙ୍ଗେ ଯୁଦ୍ଧରୁ ଅବ୍ୟାହତ ପାଇଲେ ।

ଉପରୋକ୍ତ ବିଷୟମାନଙ୍କ ପ୍ରତି ଶିକ୍ଷକ ଛାତ୍ରମାନଙ୍କର ମନୋଯୋଗ ଓ ଲକ୍ଷ୍ୟ ଆକର୍ଷଣ କରି ବିଷୟବସ୍ତୁ ଆଲୋଚନା କରିବେ ।

ବିଭାଗୀୟ ଆବୃତ୍ତି –

ପ୍ରଶ୍ନ – ୧. ଆଓରଙ୍ଗଜେବଙ୍କ ରାଜତ୍ୱରେ ଶିବାଜୀ କିପରି ମହରଟ୍ଟା ରାଜ୍ୟ ସ୍ଥାପନ କଲେ ?

୨. ଶମ୍ଭୁଜୀ ଓ ସାହୁଙ୍କୁ ଦମନ କରିବାର ଫଳ କଣ ହେଲା ?

୩. ଛାରାବାଈ କପରି ମୋଗଲଶକ୍ତିକୁ ତଡ଼ିଦେଲେ ?

୪. ବାହାଦୁର ସାହ କପରି ମହଟ୍ଟା ବିବାଦରୁ ଅବ୍ୟାହତି ପାଇଲେ ?

ପ୍ରୟୋଗ  ପ୍ରବନ୍ଧ ରଚନା

ଏହା ଆବୃତ୍ତିମୂଳକ ଓ ସଂଗଠନ ପାଠ । ତେଣୁ କଳାପଟା ସାରାଂଶ ପ୍ରସ୍ତୁତ କରିବାରେ ଶିକ୍ଷକଙ୍କ ସାହାଯ୍ୟ ଅଧିକ ଆବଶ୍ୟକ ନୁହେ । ଶିକ୍ଷକ ଛାତ୍ରମାନଙ୍କୁ ଘରେ ନିଜ ଚେଷ୍ଟାରେ କଳାପଟା ସାରାଂଶ ଲେଖିବାକୁ କହିବେ ।

ପାଠର ସାରାଂଶ ପ୍ରସ୍ତୁତ କରିସାରି ଛାତ୍ରମାନେ "ମୋଗଲ ସମ୍ରାଟମାନଙ୍କ ଦାକ୍ଷିଣାତ୍ୟ ନୀତି" ବିଷୟରେ ଏକ ପ୍ରବନ୍ଧ ରଚନା କରି ଆଣିବେ । ଶିକ୍ଷକ ପରବର୍ତ୍ତୀ ଦିନ ପ୍ରବନ୍ଧ-ମାନ ସଂଶୋଧନ କରିବେ । ଛାତ୍ରମାନଙ୍କ ପ୍ରବନ୍ଧର ମୂଲ୍ୟ ନିରୂପଣ ନିମନ୍ତେ ନମ୍ବର ଦେବେ ।



ଶ୍ରେଣୀ—ଦଶମ

ସମୟ— ୪୫ ମିନିଟ୍ ।

ବିଷୟ – ଇତିହାସ : ଆକବର

ପାଠ— ଟୋଡରମଲ୍ଲଙ୍କ ରାଜସ୍ୱ ବନ୍ଦୋବସ୍ତ
ଶିକ୍ଷା ଦେବା ନିମନ୍ତେ ପୂର୍ବପ୍ରସ୍ତୁତ ପାଠ

ଉଦ୍ଦେଶ୍ୟ- ଛାତ୍ରମାନଙ୍କଦ୍ୱାରା ସ୍ୱାଧୀନ ଅଧ୍ୟୟନ କରାଇବା

ଉପକରଣ – (୧) ଶ୍ରେଣୀର ନିତ୍ୟ ବ୍ୟବହାର୍ଯ୍ୟ ଉପକରଣ ।
(୨) ଇତିହାସ ପାଠ୍ୟପୁସ୍ତକ ।
(୩) ଓଡ଼ିଶାର ମାଦଳାପାଞ୍ଜି ଓ ମହାଭାରତରୁ ଉଦ୍ଧୃତ, ମୁଦ୍ରିତ ବା ଲିଥୋଗ୍ରାଫ୍ ବା ହସ୍ତଲିଖିତ ବିବରଣୀ ।
(୪) ମୁଦ୍ରିତ ବା ଲିଥୋଗ୍ରାଫ୍ ବା ହସ୍ତଲିଖିତ ପ୍ରଶ୍ନାବଳୀ ।

| ସୋପାନ | ବିଷୟବସ୍ତୁ | ପ୍ରଣାଳୀ | ମନ୍ତବ୍ୟ |
|---|---|---|---|
| ଉପକ୍ରମ --ଉଦ୍ଦେଶ୍ୟ | "ଟୋଡରମଲ୍ଲଙ୍କ ରାଜସ୍ୱବନ୍ଦୋବସ୍ତ" | ଆଜି ଆମେମାନେ ପ୍ରାଚୀନ କାଳରୁ ଭାରତର ବନ୍ଦୋବସ୍ତ ଉପରେ କ୍ରମେ ବିକାଶ | |

ଜ୍ଞାପନ

ଲାଭ କରିଛୁ ତାହା ଆଲୋଚନା କରିବା ବୋଲି କହି ଶିକ୍ଷକ ଛାତ୍ରମାନଙ୍କୁ ଉଦ୍ଦେଶ୍ୟ ଜ୍ଞାପନ କରିବେ ଏବଂ କଳାପଟାର ଗୋଟିଏ କୋଣରେ ପାଠର ନାମ "ଭାରତର ରାଜସ୍ୱ ବନ୍ଦୋବସ୍ତର କ୍ରମ ବିକାଶ" ପରିଷ୍କାର ରୂପେ ଲେଖିଦେବେ ।

ପୂର୍ବ- ପ୍ରସ୍ତୁତି

ମଧ୍ୟସ୍ଥି ପ୍ରଥା ବା ଜମିଦାରୀ ଉଚ୍ଛେଦ ସମ୍ବନ୍ଧରେ ଛାତ୍ରମାନଙ୍କର ଉପାର୍ଜିତ ପ୍ରତ୍ୟକ୍ଷ ଜ୍ଞାନର ଆଲୋଡ଼ନ

ଛାତ୍ରମାନଙ୍କର ପାରିପାର୍ଶ୍ୱିକ ଜ୍ଞାନ ଶିକ୍ଷକ କେତେକ ଆବଶ୍ୟକ ପ୍ରଶ୍ନଦ୍ୱାରା ପ୍ରଦର୍ଶନ କରିବେ ।

ପ୍ରଶ୍ନ—୧. ତୁମ ଗ୍ରାମରେ ଜମିଦାର (ସରବରାକାର, ଗୌନ୍ତିଆ ?) ଅଛନ୍ତି ? ଥିଲେ ?

୨. ସେମାନେ କାହିଁକି କ୍ଷତିପୂରଣ ପାଇଲେ ? ସେମାନେ ଏହା ପୂର୍ବେ ସରକାରଙ୍କ କଣ କାମ କରୁଥିଲେ ?

ଭୂରାଜସ୍ୱ ବିଭାଗ —

ଜିଲ୍ଲା କଲେକ୍ଟର
ତହସିଲଦାର
ରେଭେନ୍ୟୁ ଇନ୍‌ସପେକ୍ଟର
ଅମିନ ବା ଫଡ଼୍‌ଆର

ରାଜସ୍ୱ ବନ୍ଦୋବସ୍ତ—
ଜମିର ଜରିବ ମାପ
କସମ ନିର୍ଦ୍ଧାରଣ
ଖଜଣା ପରିମାଣଧାର୍ଯ୍ୟ

୩. ପ୍ରଜାମାନଙ୍କଠାରୁ ରାଜସ୍ୱ ଆଦାୟ କରିବା ପ୍ରକୃତରେ କାହାର କାର୍ଯ୍ୟ ?

୪. ଏବେ ସେ କାମ କିଏ କରୁଛି ? ଏଥିପାଇଁ ଆମ ଓଡ଼ିଶା ସରକାର କ'ଣ କର୍ମଚାରୀ ରଖିଛନ୍ତି ?

ଗ୍ରୁପମାନଙ୍କଠାରୁ ଆଦାୟ କରାଯାଇଥିବା ଉତ୍ତରମାନଙ୍କୁ ସଂଗଠନ କରି ଶିକ୍ଷକ କଳା-ପଟାର ବାମପାଖରେ ସଜାଇ ଲେଖିଦେବେ । ଗ୍ରାମୀୟ ଜମିର ଉତ୍କୃଷ୍ଟ ବା ନିକୃଷ୍ଟ କସମ ଓ ତହିଁର ମାଲିକାନା ସମ୍ବନ୍ଧରେ ଗ୍ରୁପ-ମାନଙ୍କର ପ୍ରତ୍ୟକ୍ଷ ଜ୍ଞାନର ଆଲୋଡ଼ନ ନିମନ୍ତେ ତା ପରେ ଶିକ୍ଷକ କେତେକ ଆବଶ୍ୟକ ପ୍ରଶ୍ନ ପଚାରି କସମ ଓ ପରିମାଣ ନେଇ ପ୍ରତ୍ୟେକ ପ୍ରକାର ରାଜସ୍ୱ କିପରି

ନିର୍ଦ୍ଧାରଣ କରାଯାଏ, ଛାତ୍ରମାନଙ୍କୁ ସେହି ଜ୍ଞାନରେ ଉପନୀତ କରାଇବେ ।

ଜଳାପଟ୍ଟର କାର୍ଯ୍ୟ—

ପୂର୍ବେ ଜମିଦାର ରାଜସ୍ୱ ଆଦାୟ କରି ସରକାର ଖଜଣାଖାନାରେ ଜମା ଦେଉଥିଲେ ।

ଓଡ଼ିଶା ସରକାର ମଧ୍ୟସ୍ଥି ପ୍ରଥା ଲୋପ କରି ଜିଲ୍ଲା କଲେକ୍ଟରଙ୍କଦ୍ୱାରା ସେ କାମ କରାଉଛନ୍ତି ।

ତହସିଲଦାର, ରେଭେନ୍ୟୁ ଇନ୍‌ସପେକ୍ଟର ଓ ଅମିନମାନେ ପ୍ରଜାଠୁଁ ରାଜସ୍ୱ ସଂଗ୍ରହ କରନ୍ତି । ପ୍ରତି ପ୍ରକାର ଜମି କିସମ ଅନୁସାରେ ଜରିବ ମାପ ହୁଏ ଏବଂ ରାଜସ୍ୱ ଧାର୍ଯ୍ୟ କରାଯାଏ ।

ବୈଦିକ ଯୁଗ, ବୌଦ୍ଧ ଯୁଗ, ହିନ୍ଦୁ ଯୁଗରେ ରାଜସ୍ୱ ପ୍ରଥା

ଶିକ୍ଷକ ମୁଦ୍ରିତ ବା ହସ୍ତଲିଖିତ ଆକାରରେ ନିମ୍ନଲିଖିତ ପ୍ରଶ୍ନମାନ ପ୍ରତ୍ୟେକ ଛାତ୍ର ହସ୍ତରେ ଦେବେ ଏବଂ ପାଠ୍ୟ ପୁସ୍ତକରୁ ସ୍ୱାଧୀନ ଅଧ୍ୟୟନଦ୍ୱାରା ତାହାଁର ଉତ୍ତର

ଲିଖିତ ଆକାରରେ ପ୍ରସ୍ତୁତ କରିବା ନିମନ୍ତେ ଉପଦେଶ ଦେବେ ।

୧. ବୈଦିକ ଯୁଗରେ ରାଜସ୍ୱ ସମ୍ବନ୍ଧରେ କଣ କଣ ବିଧି ଥିଲା ?

୨. ମୌର୍ଯ୍ୟମାନେ ( ଚନ୍ଦ୍ରଗୁପ୍ତ ) ଭୂରାଜସ୍ୱ ଆଦାୟ ନିମନ୍ତେ କି ବ୍ୟବସ୍ଥା କରିଥିଲେ ?

୩. ହର୍ଷବର୍ଦ୍ଧନଙ୍କ ଅମଳରେ ଭୂରାଜସ୍ୱ ପରିମାଣ କେତେ ଥିଲା ?

**ପ୍ରାଚୀନ ଓଡ଼ିଶାର ରାଜାମାନଙ୍କର ରାଜସ୍ୱ ପ୍ରଥା**

ମାଦଳା ପାଞ୍ଜିରୁ ଏବଂ ସାରଳା ମହାଭାରତରୁ ନିମ୍ନଲିଖିତ ଉଦ୍ଧୃତାଂଶମାନ ମୁଦ୍ରିତ ବା ହସ୍ତଲିଖିତ ଆକାରରେ ଛାତ୍ରମାନଙ୍କ ହସ୍ତରେ ଦେଇ ଶିକ୍ଷକ ନିମ୍ନଲିଖିତ ପ୍ରଶ୍ନମାନଙ୍କ ଉତ୍ତର ପୂର୍ବମତେ ପ୍ରସ୍ତୁତ କରିବାକୁ ସେମାନଙ୍କୁ କହିବେ ।

ମାଦଳାପାଞ୍ଜି ଅନଙ୍ଗଭୀମଦେବ ସମଗ୍ର ଓଡ଼ିଶାର ଭୂବନ୍ଦୋବସ୍ତ କରିଥିଲେ । ଏକାର୍ଯ୍ୟରେ ରାଜା ଦାମୋଦର ବଡ଼ପଣ୍ଡା ଓ ଈଶାନ ପଟ୍ଟନାୟକଙ୍କୁ

ସଚିବ ରୂପେ ନିଯୁକ୍ତ କରିଥିଲେ । ସେମାନେ "ନଳ" ବୋଲି ଏକ ବାଉଁଶ ଦଣ୍ଡଦ୍ୱାରା ଜମି ମାପ କରାଇଥିଲେ । ଏହି ନଳର ଦୈର୍ଘ୍ୟ ସାଢ଼େ ଛଅ ହାତ ବା ଦଶ ଫୁଟ ଆଠ ଇଞ୍ଚ ଥିଲା ।

ସମଗ୍ର ଓଡ଼ିଶାର ଜମି ପରିମାଣ = ୬,୨୨୮,୦୦୦ ବାଟି ।

ଆବାଦୀ ଭୂମି = ୪,୭୪୮,୦୦୦ „ ।

ଦଣ୍ଡା, ପାହାଡ଼, ପଡ଼ିଆ ଭୂମି = ୧,୪୮୦,୦୦୦ „ ।

ଏହି ଆବାଦୀ ଭୂମି ମଧ୍ୟରୁ ୨,୪୩୦,୦୦୦ ବାଟି ଉପରେ କର ଧାର୍ଯ୍ୟ ହୋଇଥିଲା ଏବଂ ଅବଶିଷ୍ଟ ୨,୩୧୮,୦୦୦ ବାଟି ରାଜ-କର୍ମଚାରୀ, ବ୍ରାହ୍ମଣ, ଦେବାଳୟମାନଙ୍କୁ ନିଷ୍କର ଭୂମିବୃତ୍ତି ଖଞ୍ଜା ଦିଆ ଯାଇଥିଲା ।

ସାରଳା ମହାଭାରତ
(୧) ଶାନ୍ତିପର୍ବ

"କୋଡ଼ିଏ ହାତରେ ଯେ କରିବୁ ଏକ କାଠି
ପଚିଶ ଗୁଣ୍ଠରେ ମାଣେ ବଂଶ ମାଣେ ବାଟି ।
ବାଟିକରେ ଶନାଏ ଯେ ଦେଉଥିଲେ ସଞ୍ଜା
ଆଯୁ ସେନ ବଞ୍ଚ ବୋଲି ବୋଲିବେ ଯେ ପ୍ରଜା ।"

(୨) ଆଦପଟ

"ଆପଣାର କର ପରିମାଣ କାଠି କାଟି
ପଞ୍ଚବଂଶ ହାତ ଭିଆଇଲ ନଳ ଗୋଟି ।
ଦଣ୍ଡା ଗୋପଥ ଛାଡ଼ ଉଠିଆ ହେଲେ ଭୂମି
ତହିଁରୁ କର ଆଦାୟ କଲା ଦେବସ୍ୱାମୀ ।
ଥାନ ଜାଗିରର କର ଛାଡ଼ ପରଜାଙ୍କୁ
ବହନ ଭିଆଣ କଲେ ଭଣ୍ଡାରୁ ଦେବାକୁ ।
ଏ ବିଧି ଭିଆଣ କଲେ ଛତିଶ ମଣ୍ଡଳେ
ଦେବ ବ୍ରାହ୍ମଣଙ୍କୁ କର ଛାଡ଼ି ସର୍ବକାଳେ ।
ନିଯୋଗ ଭୂମି ଛାଡ଼ଣ ଦେଲେ ଦେବତାଙ୍କୁ
ଯଜାତି ପାଞ୍ଜି ପ୍ରମାଣେ ପାଳିଲେ ପ୍ରଜାଙ୍କୁ ।

(୧) ନଳ ବା ପଦଳା :—
ଏକ ହାତ = ୪ ଦସ୍ତି;
ନଳ = ୨୪ ଦସ୍ତି = ୬ ହାତ;
ନଳକୁ ୩ ଗୁଣ ବା ୪ ଗୁଣ

ପ୍ରଶ୍ନ ୧. ଓଡ଼ିଶାର ରାଜା ଅନଙ୍ଗଭୀମଦେବ କପରି ଭାବରେ ଜମି ମାପ କରୁଥିଲେ ?
୨. ନଳର ଦୈର୍ଘ୍ୟ କେତେ ଥିଲା ?
୩. ଆଜି କ କ ଭିନ୍ନ ପ୍ରକାର ନଳର

ଅର୍ଥାତ୍ ମାପିବା ସୁବିଧା ନିମନ୍ତେ ୨୦ ହାତ ବା ୨୫ ହାତ ମଧ୍ୟ କରା ଯାଉଥିଲା ।

(୨) ଭୂମି ପରିମାଣ :—

୨୪ ଦସ୍ତି ଲମ୍ବ × ୨୪ ଦସ୍ତି ପ୍ରସ୍ଥ ଭୂମି = ଏକ ବିଶ୍ୱା;

୧୬ ବିଶ୍ୱା = ଏକ ଗୁଣ୍ଠ

୨୫ ଗୁଣ୍ଠ = ଏକ ମାଣ

୨୦ ମାଣ = ଏକ ବାଟି

(୩) କର ପରିମାଣ :—

ଚନା = ୧/୨୦ ତୋଳ ବା ଭରି ଚନା ଏକ ଫଳ ।

ଶୁଷ୍କ ଚନା ଫଳ ଓ କାଇଞ୍ଚ ଫଳରେ ସୁନା ଓଜନ କରା-

ପ୍ରଚଳନ ଥିଲା ? (୬ହାତ, ୨୦ ହାତ, ୨୫ ହାତ)

୪. ଜମିମାପର ହିସାବ କିପରି କରାଯାଉଥିଲା ? (ବାଟି, ମାଣ, ଗୁଣ୍ଠ ଇତ୍ୟାଦି)

୫. କେଉଁ କେଉଁ ଜମିର ରାଜସ୍ୱ ଛାଡ଼ ଥିଲା ? (ଦଣ୍ଡା = ସାଧାରଣ ଚଲା ପଥ, ଗୋପଥ = ଗୋଚାରଣ ଭୂମି, ଦେବୋତ୍ତର ଭୂମି, ବ୍ରହ୍ମୋତ୍ତର ଭୂମି, ରାଜକର୍ମଚାରୀଙ୍କ ବୃତ୍ତି, ଅନାବାଦୀ ବା ପତିତ ଭୂମି, ବନ ଜଙ୍ଗଲ ପାହାଡ଼)

୬. ଓଡ଼ିଶାରେ କରାଧୀନ ଭୂମି କେତେ ଥିଲା ?

୭. ରାଜାଙ୍କୁ ଭୂରାଜସ୍ୱ କେତେ ମିଳୁଥିଲା ?

ଯାଏ । କାଇଅଁର ଓଜନ=
୫ ଟୋଲ, ଅତଏବ ଏକ
ଟଙ୍କାର ଓଜନ ଗୁଡ଼େଛି
କାଇଅଁର ଓଜନ ସଙ୍ଗେ ସମାନ ।
ଏକ ବାଟି ବା ୨୦ ଏକର
ଜମିର ରାଜସ୍ୱ ୪ ରତି ସୁନା
ଥିଲା ।

ଶିକ୍ଷକ ଏଠାରେ ନଳର ମାପପାର୍ଥକ୍ୟ,
ଜମିମାପର ହିସାବ ଓ ରାଜସ୍ୱ ଆକାରରେ
ଦିଆ ଯାଉଥିବା ସୁନାର ପରିମାଣ ହିସାବ
ନିଜେ ବର୍ଣ୍ଣନା କରି ବୁଝାଇଦେବେ ।
ଓଡ଼ିଶାରେ ୨,୪୩୦,୦୦୦ ବାଟି ଭୂମି
ଉପରେ କର ଧାର୍ଯ୍ୟ ହୋଇଥିଲା । ସୁତରାଂ
ରାଜାଙ୍କର ବାର୍ଷିକ ଭୂରାଜସ୍ୱ ୧,୬୧,୫୦୦
ଏକ ଲକ୍ଷ ଏକୋଇଶ ହଜାର ପାଞ୍ଚ ଶହ
ତୋଳ ସୁବର୍ଣ୍ଣ ମୁଦ୍ରା ଥିଲା ।

ପୁନରାବୃତ୍ତି

ଶିକ୍ଷକ ନିମ୍ନଲିଖିତ ପ୍ରଶ୍ନଦ୍ୱାରା ପାଠର ଆବୃତ୍ତି କରାଇବେ ।

୧. ବୈଦିକ ଯୁଗରେ ରାଜାଙ୍କୁ ରାଜସ୍ୱ ଦେବା କାହିଁକି ପ୍ରଜାର ସ୍ୱେଚ୍ଛା ପ୍ରଣୋଦିତ ପରିମାଣ ଆକାରରେ ରହିଥିଲା ?

୨. ମୌର୍ଯ୍ୟଯୁଗରେ ଉତ୍ପନ୍ନ ଶସ୍ୟର ଅଂଶ ହିସାବ ରାଜସ୍ୱ ନିର୍ଦ୍ଦିଷ୍ଟ ହୋଇଥିବାରୁ ଜମିର ଜରିପ ମାପ ସମ୍ବନ୍ଧରେ କଣ ସମ୍ଭାବନା ରହୁଛି ?

୩. ହର୍ଷବର୍ଦ୍ଧନଙ୍କ ଅମଳରେ ଭୂମି ମାପ ପ୍ରଣାଳୀ ବା ଭୂରାଜସ୍ୱ ପରିମାଣ କଣ ଥିଲା ?

୪. ଓଡ଼ିଶାର ରାଜାମାନେ ଜମିମାପର କି ପ୍ରଣାଳୀ ପ୍ରୟୋଗ କରିଥିଲେ ? କିପରି ରାଜସ୍ୱ ଆଦାୟ କରୁଥିଲେ ?

ଏ ପାଠରେ ସାରାଂଶ ଦେବାର ଆବଶ୍ୟକତା ନାହିଁ । ଛାତ୍ରମାନେ ସେ କାର୍ଯ୍ୟ ନିଜେ ନିଜେ କରିବେ ।

ପ୍ରୟୋଗ— "ବୈଦିକଯୁଗରୁ ହିନ୍ଦୁକାଳର ଭୂରାଜସ୍ୱ ବନ୍ଦୋବସ୍ତ ପ୍ରଣାଳୀର କ୍ରମ-ବିକାଶ"—

ଶିକ୍ଷକ ଏହି ବିଷୟରେ ଏକ ପ୍ରବନ୍ଧ ଘରୁ ଲେଖି ଆଣିବାକୁ ଛାତ୍ରମାନଙ୍କୁ କହିବେ ଏବଂ ପରବର୍ତ୍ତୀ ଦିନ ଶ୍ରେଣୀରେ କେତେକ ମିନିଟ୍ ପାଇଁ ଲିଖିତ ପ୍ରବନ୍ଧଟିର ଆଲୋଚନା କରାଇବେ ।



ଶ୍ରେଣୀ— ଦଶମ

ସମୟ— ୪୫ ମିନିଟ୍

ବିଷୟ— ଇତିହାସ : ଆକବର

ପାଠ— ତୋଡରମଲ୍ଲଙ୍କ ରାଜସ୍ୱବନ୍ଦୋବସ୍ତ

ଉପକରଣ— ଆଇନଆକବରୀରୁ ଅନୂଦିତ ବିବରଣୀ।

| ସୋପାନ | ବିଷୟବସ୍ତୁ | ପ୍ରଣାଳୀ | ମନ୍ତବ୍ୟ |
|---|---|---|---|
| ପୂର୍ବପାଠ ସଙ୍ଗେ ସମନ୍ୱୟ ସ୍ଥାପନ | | ଛାତ୍ରମାନେ ଘରୁ ଲେଖି ଆଣିଥିବା ପ୍ରବନ୍ଧର ଆଲୋଚନା କରି ଶିକ୍ଷକ ନିମ୍ନଲିଖିତ ସିଦ୍ଧାନ୍ତର ଅବତାରଣା କରିବେ : | |

୧. ଭୂସ୍ୱାମୀଙ୍କ ରାଜାଙ୍କୁ ବା ସରକାରଙ୍କୁ ଦେବା ପ୍ରଥା ଭାରତରେ ବୈଦିକ ଯୁଗରୁ ପ୍ରଚଳିତ ଅଛି।

୨. ବୈଦିକ ଯୁଗରେ କର୍‌ର ପରିମାଣ ନିର୍ଦ୍ଦିଷ୍ଟ ନ ଥିଲା। ପ୍ରଜାମାନେ ଯଥାଶକ୍ତି କର ଦେଉଥିଲେ।

୩. ମୌର୍ଯ୍ୟମାନେ ଉତ୍ପନ୍ନ ଶସ୍ୟର ଚତୁର୍ଥାଂଶ ଭୂକର ନେଉଥିଲେ।

୪. ବର୍ଦ୍ଧନ ବଂଶ ଉତ୍ପନ୍ନ ଶସ୍ୟର ଷଷ୍ଠାଂଶ ଭୂକର ନେଉଥିଲେ।

୫. ମୌର୍ଯ୍ୟ ଓ ବର୍ଦ୍ଧନ ଅମଳରେ ଉତ୍ପନ୍ନ ଶସ୍ୟର ପରିମାଣ ଅନୁସାରେ ରାଜସ୍ୱ ନିର୍ଦ୍ଧାରଣ ହେଉଥିବାରୁ ଜମି ମାପ ବା ଭୂମି ବନ୍ଦୋବସ୍ତ ହେଉଥିଲା କି ନାହିଁ, କିଛି ଜଣାଯାଏ ନାହିଁ ।

"ତୋଡରମଲ୍ଲଙ୍କ ରାଜସ୍ୱବନ୍ଦୋବସ୍ତ" ତା ପରେ ଶିକ୍ଷକ 'ଆଜି ଆକବରଙ୍କ ଅମଳର ତୋଡରମଲ୍ଲଙ୍କ ରାଜସ୍ୱ ବନ୍ଦୋବସ୍ତ କଥା ଆଲୋଚନା କରିବା' ବୋଲି ଶ୍ରେଣୀରେ ଜଣାଇଦେବେ ଏବଂ କଳାପଟାର ବାମ ପାଖର ଶୀର୍ଷକୋଣରେ ପାଠର ନାମ ଲେଖିଦେବେ ।

| | | |
|---|---|---|
| ପୂର୍ବାର୍ଜିତଜ୍ଞାନ ସଙ୍ଗେ ସମନ୍ୱୟ ସ୍ଥାପନ | ଶେରସାହଙ୍କ ଅମଳର ରାଜସ୍ୱ ବନ୍ଦୋବସ୍ତ | ଶିକ୍ଷକ କହିବେ, ଶେରସାହଙ୍କ ରାଜତ୍ୱର ଜମା ବନ୍ଦୋବସ୍ତ ବିଷୟରେ ଛାତ୍ରମାନଙ୍କୁ ନିର୍ଦ୍ଦିଷ୍ଟ ଓ ବିଶେଷ ବିବରଣ ଜଣାଅଛି । ତା ପରେ ଶେରସାହଙ୍କ ରାଜସ୍ୱବନ୍ଦୋବସ୍ତ ବିଷୟରେ ପ୍ରଶ୍ନ ପଚାରିବେ : |
| ତୋଡରମଲ୍ଲ<br>—ଅଯୋଧ୍ୟା ନିବାସୀ ହିନ୍ଦୁ କ୍ଷତ୍ରିୟ— | | ପ୍ରଶ୍ନ — ୧. ତୋଡରମଲ୍ଲଙ୍କ ସମ୍ବନ୍ଧରେ କଣ ଜାଣ ? |

| | |
|---|---|
| ଦ୍ୱନ୍ଦ୍ୱ ପ୍ରଣାଳୀରେ ରାଜସ୍ୱ ବନ୍ଦୋବସ୍ତରେ ନିପୁଣ—ଶେରସାହଙ୍କ ରାଜସ୍ୱ ମନ୍ତ୍ରୀ । | ୨. ସେ ଶେରସାହଙ୍କ ରାଜ୍ୟରେ କଣ କାର୍ଯ୍ୟ କରୁଥିଲେ ? |
| | ୩. ସେ କାହାଁକ ଦ୍ୱନ୍ଦ୍ୱ ରାଜସ୍ୱ ବନ୍ଦୋବସ୍ତ ପ୍ରଣାଳୀ ଉପରେ ଭିତ୍ତି କରି ଶେରସାହଙ୍କ ରାଜ୍ୟରେ ରାଜସ୍ୱ ବନ୍ଦୋବସ୍ତ କରିଥିଲେ ? |
| ଜମିର ଜରିବ ମାପ | ୪. ଟୋଡରମଲ୍ଲ ଜମିକୁ କିପରି ମାପ କରାଉଥିଲେ ? (ଜରିବ = ଲୁହା ଶିକୁଳି) |
| — ପଟ୍ଟା ଓ କବୁଲିୟତ ପ୍ରଥା— ଉତ୍ପନ୍ନର ଚତୁର୍ଥାଂଶ ରାଜସ୍ୱ ପରିମାଣ— ମୁଦ୍ରା ବା ଶସ୍ୟ ଆକାରରେ କର ଆଦାୟ । | ୫. କାହିଁକି ? (ପ୍ରକାର ଜମି ପରିମାଣ ନିର୍ଦ୍ଧାରଣ – ଜମିରୁ ହାରାହାରି ଉତ୍ପନ୍ନ ନିର୍ଦ୍ଧାରଣ) |

୬. ପଟ୍ଟା କଣ ? (ସରକାର ପ୍ରଜାଙ୍କୁ ନିର୍ଦ୍ଦିଷ୍ଟ ସର୍ତ୍ତରେ ଜମି ଦେଉଥିଲେ)

୭. କବୁଲିୟତ କଣ ? (ପ୍ରଜା ନିର୍ଦ୍ଦିଷ୍ଟ ସର୍ତ୍ତରେ ସରକାରଙ୍କଠାରୁ ଜମି ନେଇ ନିର୍ଦ୍ଧାରିତ ପରିମାଣ କର ଦେବାକୁ କବୁଲ କରୁଥିଲେ)

୮. କର ପରିମାଣ କେତେ ନିର୍ଦ୍ଦିଷ୍ଟ ଥିଲା ? ଏହା କି ଆକାରରେ ଦିଆଯାଇ ପାରୁଥିଲା ? (ମୁଦ୍ରା ବା ଶସ୍ୟ)

ରପ୍ତାନିବାଣି ଓ ମାଲ୍ଦହାନିବାଣି ପ୍ରଥା

ଶିକ୍ଷକ ଏହିଭଳି ରପ୍ତାନିବାଣି ଓ ମାଲ୍ଦହାନି-ବାଣି ପ୍ରଥା ମଧ୍ୟରେ ପାର୍ଥକ୍ୟ ବୁଝାଇ-ଦେବେ । ତୋଡରମଲ୍ଲ ରପ୍ତାନିବାଣି ପ୍ରଥା ପ୍ରଚଳନ କରିଥିଲେ । ଇଂରାଜ ଅମଳରେ ଆମ ଓଡ଼ିଶାରେ ମାଲ୍ଦହାନିବାଣି ପ୍ରଥା ଥିଲା, ଏବେ କଂଗ୍ରେସ ସରକାର ରପ୍ତାନିବାଣି ପ୍ରଥା ପ୍ରଚଳନ କରିଛନ୍ତି ।

କଳାପଟାର କାର୍ଯ୍ୟ :—(ବିଷୟବସ୍ତୁ ସ୍ତମ୍ଭରେ ଦିଆ ଯାଇଅଛି) ।

ଜ୍ଞାନଦାନ—

୧. ପ୍ରଥମ ବିଭାଗ

ଶେରସାହଙ୍କ ମୃତ୍ୟୁ ପରେ ରାଜ୍ୟରେ ବିଶୃଙ୍ଖଳା ଓ ରାଜସ୍ୱ ବିଭାଗର ଅକର୍ମଣ୍ୟତା — ଆକବରଙ୍କ ଅମଳରେ ରାଜସ୍ୱ-ସଂଗ୍ରହରେ ବିଳମ୍ବ ଓ ବାଧା — ବାର୍ଷିକ ମୋଟ ରାଜସ୍ୱର ହ୍ରାସବୃଦ୍ଧି ।

ଶିକ୍ଷକ ବିଷୟବସ୍ତୁ ସ୍ତମ୍ଭର ବିବରଣୀ ବିଶଦ ଭାବରେ ଛାତ୍ରମାନଙ୍କୁ ବୁଝାଇ ଦେବେ । ପ୍ରତି ଛାତ୍ରର ହାତରେ ଆବୁଲ-ଫାଜଲଙ୍କ "ଆଇନି ଆକବରି"ଗ୍ରନ୍ଥରୁ ଅନୂଦିତ ନିମ୍ନ କେତେକ ପଙ୍କ୍ତି ପଢ଼ିବାକୁ ଦେବେ ।

When through the prudent management of the sovereign the empire was enlarged in extent, it became difficult to ascertain each year the prices current and much inconvenience was caused by the delay. On the one hand the husbandman complained of excessive exactions, and on the other the holder of assigned lands was aggrieved on account of the revenue balances. His Majesty devised a remedy for these evils and in the discernment of his world-adoring mind fixed a settlement for ten years; the people were thus made contented and their gratitude was abundantly manifested.

ଛାତ୍ରମାନେ ଅବତରଣୀଟି ଭଲ ରୂପେ ପଢ଼ିସାରି ବୁଝିବା ପରେ ସେମାନଙ୍କଠାରୁ ନିମ୍ନଲିଖିତ ପ୍ରଶ୍ନର ଉତ୍ତର ଆଦାୟ କରିବେ ।

(କ) ପ୍ରତିବର୍ଷ ଦ୍ରବ୍ୟର ବଜାର ଦର କ୍ରମେ ପ୍ରଜାର ଦେୟ ମୁଦ୍ରା ପରିମାଣ ନିର୍ଦ୍ଧାରଣ

୧. ପ୍ରଜାଠାରୁ ବାର୍ଷିକ ଜମା ଦେୟ କି ପ୍ରକାରେ ଆଦାୟ କରାଯାଉଥିଲା ?

୨. କୃଷକର ଅସୁବିଧା ବା କଷ୍ଟ କଅଣ ଘଟୁଥିଲା ?

(ଖ) କର୍ମଚାରୀମାନଙ୍କ ଦ୍ୱାରା ଅତ୍ୟଧିକ ଦର ନିର୍ଦ୍ଧାରଣ
(ଗ) ରାଜ୍ୟର ବିଶାଳତା ଦୃଷ୍ଟିରୁ କାର୍ଯ୍ୟରେ ବିଳମ୍ବ
(ଘ) ରାଜସ୍ୱ ଅନାଦାୟ
(ଙ) ଦଶ ବର୍ଷର ଉତ୍ପନ୍ନର ହାରାହାରି ଦରେ ଦଶ-ବର୍ଷିଆ ବନ୍ଦୋବସ୍ତ

୨ୟ ବିଭାଗ—

ଆକବରଙ୍କ ରାଜସ୍ୱ ମନ୍ତ୍ରୀ ତୋଡରମଲ୍ଲ ଜମିର ଜରିପ ମାପ କରିଥିଲେ । କେତେ ଝଣ୍ଡ କାଠ ବା ନଦୀ କାଶ ଦଣ୍ଡ ଲୁହାଚିକୁଳଦ୍ୱାରା ପରସ୍ପର ସଂଯୁକ୍ତ ହୋଇ ଜରିପ ନଳର କାର୍ଯ୍ୟ କରୁଥିଲା । ଜମିକୁ ଉତ୍କୃଷ୍ଟ, ମଧ୍ୟମ ଓ ନିକୃଷ୍ଟ ତିନି ଶ୍ରେଣୀରେ ବିଭକ୍ତ କରାଯାଉଥିଲା । ମଧ୍ୟମ ଶ୍ରେଣୀର ଜମିର ହାରାହାରି ଉତ୍ପନ୍ନର ଏକ ତୃତୀୟାଂଶ ରାଜସ୍ୱ ଧାର୍ଯ୍ୟ କରାଯାଉଥିଲା । ମୁଦ୍ରା କର ରୂପେ ଗ୍ରହଣ

୩. ଆକବରଙ୍କ ସରକାରକୁ ଏକାର୍ଯ୍ୟରେ ବିଳମ୍ବ ଘଟିବାର କାରଣ କଣ ?
୪. ଆକବର ଏ ଅସୁବିଧା ଓ ବିଳମ୍ବ ଦୂର କରିବା ନିମନ୍ତେ କଣ ପ୍ରତିକାର କଲେ ?

୨ୟ ସ୍ତମ୍ଭର ବିଷୟ ଶିକ୍ଷକ ବର୍ଣ୍ଣନା କରିବେ । ଛାତ୍ରମାନଙ୍କ ପାଠ୍ୟ ପୁସ୍ତକରେ ଯଦି ବର୍ଣ୍ଣନାଟି ଉତ୍ତମରୂପେ ଲିଖିତ ହୋଇଥିବ, ତେବେ ଛାତ୍ର-ମାନଙ୍କୁ ତାହା ଶ୍ରେଣୀରେ ନିଜେ ନିଜେ ପଢ଼ିନେବାକୁ କହିବ ।

କର ଯାଉଥିଲା, କିନ୍ତୁ ପ୍ରଜା ଗୃହଁଙ୍କେ ଶସ୍ୟ ଆକାରରେ ରାଜସ୍ୱ ଦେଇ ପାରୁଥିଲା ।

ନିମ୍ନଲିଖିତ ପ୍ରଶ୍ନଦ୍ୱାରା ଜ୍ଞାନର ଅନୁବୃତ୍ତି କରାଇବେ :—

୧. ଆକବରଙ୍କ କରିବ ନଳ କିପରି ନିର୍ମିତ ହୋଇଥିଲା ?

୨. କର ପରିମାଣ କିପରି ଧାର୍ଯ୍ୟ ହୋଇଥିଲା ?

ଗସ୍ତ ବିଭାଗ—

ସରକାର ଓ ପ୍ରଜା ମଧ୍ୟରେ ରାଜସ୍ୱ ସଂଗ୍ରହ ପାଇଁ ମଧ୍ୟସ୍ଥ ନ ଥିଲେ । ରୟତବାରୀ ପ୍ରଥା ପ୍ରଚଳିତ ଥିଲା । ପ୍ରଜା ସରକାରଙ୍କୁ କବୁଲିୟତ ଲେଖି ଦେଉଥିଲେ ଏବଂ ସରକାର ପ୍ରଜାଙ୍କୁ ଜମିର ପଟ୍ଟା ଦେଉଥିଲେ । ଆମିଲ ବା ଅମାଲଗୁଜାର ଜିଲ୍ଲାର ରାଜସ୍ୱ ସଂଗ୍ରାହକ ଥିଲେ । କାନନଗୋ ରାଜସ୍ୱର ହିସାବ ରଖୁଥିଲେ । ପୋତଦାର ଜିଲ୍ଲାର ଖାଜାଞ୍ଚୀ ଥିଲେ । ବିଟିକଚି ହିସାବ ସମୀକ୍ଷକ

୨ୟ ବନ୍ଦୋବସ୍ତ ପ୍ରଣାଳୀ ନମେ ଗସ୍ତ ବିଭାଗ ମଧ୍ୟ ଶିକ୍ଷା ଦିଆଯିବ ।

ପ୍ରଶ୍ନ—

୧. ଆକବରଙ୍କ ରାଜସ୍ୱବିଭାଗକୁ କାହିଁକି ରୟତବାରୀ ପ୍ରଥା କୁହାଯିବ ?

୨. ଗ୍ରାମରେ ରାଜସ୍ୱ ସଂଗ୍ରହ ପାଇଁ କି କି କର୍ମଚାରୀ ଥିଲେ ?

( auditor ) ଥିଲେ । ପ୍ରତି ଗ୍ରାମରେ ମକଦ୍ଦମ ଓ ଚନ୍ଧୁଆର ଗ୍ରାମର ରାଜସ୍ୱ ସଂଗ୍ରହରେ ସାହାଯ୍ୟ କରୁଥିଲେ ।

୩. ଅମିଲ,କାନନଗୋ, ପୋତଦାର ଓ ବଟିକଚର କର୍ତ୍ତବ୍ୟ ବର୍ଣ୍ଣନା କର ।

ଆବୃତ୍ତି — ଶିକ୍ଷକ ନିମ୍ନଲିଖିତ ପ୍ରଶ୍ନ ପଚାରି ଛାତ୍ରମାନଙ୍କଠାରୁ ପାଠର ସାରାଂଶ ଆଦାୟ କରିବେ ଏବଂ ତାହା କଳାପଟାରେ ଲେଖିଦେବେ :—

୧. ଟୋଡରମଲ୍ଲଙ୍କ ଦଶବର୍ଷିଆ ରାଜସ୍ୱ ବନ୍ଦୋବସ୍ତ ସଂକ୍ଷେପରେ ବର୍ଣ୍ଣନା କର ।

୨. ସେ କେଉଁ କେଉଁ କର୍ମଚାରୀଙ୍କ ଦ୍ୱାରା କିପରି ଭାବରେ ରାଜସ୍ୱ ଆଦାୟ କରୁଥିଲେ ?

୩. ରପ୍ତବାରି ଓ ମାହାଲବାରି ପ୍ରଥା ମଧ୍ୟରେ ପାର୍ଥକ୍ୟ କଅଣ ?

ବ୍ଲାକ୍‌ବୋର୍ଡ଼ ସାରାଂଶ :—

୧. ପ୍ରତ୍ୟେକ ପ୍ରକାର ଜମିର ଜରିପମାପ—ଜମିର ତିନି ଭାଗ, ଉତ୍କୃଷ୍ଟ, ମଧ୍ୟମ, ନିକୃଷ୍ଟ—ହାରାହାରି ଉତ୍ପନ୍ନର ଏକତୃତୀୟାଂଶ ସରକାରୀ ଦେୟ ରାଜସ୍ୱ—ନଗଦ ମୁଦ୍ରା କର କିମ୍ବା ପରିବର୍ତ୍ତେ (ଟଙ୍କା ଗୃହୀତ ହେଲେ) ଶସ୍ୟ ।

୨. ରାଜସ୍ୱ ବିଭାଗର କର୍ମଚାରୀ – ଅମୀଲ : ଜିଲ୍ଲାର ପ୍ରଧାନ କର୍ତ୍ତା । କାନନଗୋ—ଜିଲ୍ଲାର ରାଜସ୍ୱ ହିସାବରକ୍ଷକ । ପୋତଦାର—ଜିଲ୍ଲାର ଖାଜାଞ୍ଚୀ । ବଟିକଚ – ଜିଲ୍ଲାର ହିସାବ ସମୀକ୍ଷକ । ମକଦ୍ଦମ ଓ ଚନ୍ଧୁଆରି— ପ୍ରଜାଠାରୁ

ପ୍ରତ୍ୟକ୍ଷ ରାଜସ୍ୱ ସଂଗ୍ରହ କରୁଥିବା ଗ୍ରାମୀଣ କର୍ମଚାରୀ । ପଟ୍ଟୁଆରି ମାପ କରେ ଏବଂ ମକଦମ (ଗ୍ରାମର ପ୍ରଧାନ) ପଟ୍ଟୁଆରିଙ୍କୁ ସଂଗ୍ରହରେ ସାହାଯ୍ୟ କରେ ।

୩. ରୟତବାରି ପ୍ରଥା—ପ୍ରଜା ଓ ସରକାର ମଧ୍ୟରେ ମଧ୍ୟସ୍ଥ (ବା ଅନ୍ତର୍ବର୍ତ୍ତୀ ସ୍ୱତ୍ୱାଧିକାରୀ ନ ଥିଲେ । ପ୍ରଜା କବୁଲିୟତ ଲେଖିଦିଏ । ସରକାର ପ୍ରଜାକୁ ପଟ୍ଟା ଦିଅନ୍ତି ।

ପ୍ରୟୋଗ- ସ୍ୱାଧୀନ ଚିନ୍ତା ଓ ସିଦ୍ଧାନ୍ତ ଶିକ୍ଷକ ନିମ୍ନଲିଖିତ ପ୍ରଶ୍ନ ପଚାରି ଛାତ୍ର-ମାନଙ୍କର ସ୍ୱାଧୀନ ଚିନ୍ତାର ଆଲୋଡ଼ନ କରିବେ :—

୧. ଆକବର କାହିଁକି ହିନ୍ଦୁ ରାଜା ତୋଡରମଲ୍ଲଙ୍କୁ ରାଜସ୍ୱମନ୍ତ୍ରୀ ରୂପେ ନିଯୁକ୍ତ କରିଥିଲେ ?

( ଛାତ୍ରମାନେ ଯେଉଁ ସବୁ ଉତ୍ତର ଦେବେ, ଉପଯୁକ୍ତ ଉତ୍ତର ପାଇବା ସକାଶେ ସୂଚନାତ୍ମକ ଉପପ୍ରଶ୍ନମାନ ମଧ୍ୟ ପଚାରିବେ ) ।

୨. ତୋଡରମଲ୍ଲ କାହିଁକି ପୂର୍ବ ପ୍ରଚଳିତ ଭାରତୀୟ ପ୍ରଣାଳୀରେ ରାଜସ୍ୱ-ବନ୍ଦୋବସ୍ତ କରିଥିଲେ ?

ଆବହମାନ କାଳରୁ ଭାରତରେ ୩. ସେହି ପ୍ରଣାଳୀ କେବକାଳରୁ

ପ୍ରଚଳିତ ରାଜସ୍ୱପ୍ରଥାର ସମ୍ପ୍ରସାରଣ ହୋଇଅଛି ମାତ୍ର, କିନ୍ତୁ ପରିବର୍ତ୍ତନ ହୋଇନାହିଁ ।

ଭାରତରେ ପ୍ରଚଳିତ ଅଛି ? କିପରି ତାହାର ସମ୍ପ୍ରସାରଣ ହୋଇଛି ?

୪. ଇଂରାଜ ଅମଳରେ ସେହି ପ୍ରଣାଳୀର କଣ ପରିବର୍ତ୍ତନ ହୋଇଥିଲା ?

୫. ୧୯୪୭ ପରେ ତାହାର କି କି ନୂତନୀକରଣ ହୋଇଛି ?

ପ୍ରଶ୍ନମାନଙ୍କର ଉତ୍ତରମାନଙ୍କୁ ସୁପରିଚାଳିତ କରି ଏବଂ ସଜାଇ ବିଷୟବସ୍ତୁ ସମ୍ପୃକ୍ତରେ ଥିବା ସିଦ୍ଧାନ୍ତରେ ଉପନୀତ ହେବାକୁ ଶିକ୍ଷକ ସେମାନଙ୍କୁ ସାହାଯ୍ୟ କରିବେ ।

ସିଦ୍ଧାନ୍ତ— (୧) ସରକାର ବଦଳିଛି, ଶାସକ ବଦଳିଛନ୍ତି, କିନ୍ତୁ ଭାରତର ରାଜସ୍ୱ-ପ୍ରଥାର ପରିବର୍ତ୍ତନ ଘଟିନାହିଁ ।

(୨) ନୂତନତା ଭିତ୍ତି ଉପରେ ଇତିହାସ ପ୍ରତିଷ୍ଠିତ ହୁଏ ନାହିଁ ।

